# ମଇ ଦିବସ
# ଇତିହାସ, ତାତ୍ପର୍ଯ୍ୟ ଓ ସଂଗ୍ରାମ

ସୌରୀବନ୍ଧୁ କର

୧୮୯୬ ମସିହା ମଇ ଦିବସ ଦିନ ଜର୍ମାନ ଶ୍ରମିକମାନଙ୍କର ଗୋଟିଏ ଖବରକାଗଜ ଭବିଷ୍ୟତବାଣୀ ସଦୃଶ୍ୟ ଲେଖିଥିଲେ ଯେ ମଇ ଦିବସ ସମସ୍ତ ମୁକ୍ତିକାମୀ ମାନବଜାତିର ଶାନ୍ତି ଓ ସମୃଦ୍ଧିର ଛୁଟି ଦିବସ ଭାବେ ସମସ୍ତ ବୁର୍ଜୁଆ ଛୁଟି ଦିବସଠାରୁ ଚିର ଜାଜ୍ୱଲ୍ୟମାନ ହୋଇରହିବ । ମଇ ଦିବସ ଭବିଷ୍ୟତ ଦିଗକୁ ଅଗ୍ରସର ହେବାର ଦିବସ କାରଣ ସମାଜ ବିକାଶ ପାଇଁ ସଦାସର୍ବଦା ସାମାଜିକ ପ୍ରଗତି ମାର୍ଗରେ ଯୋଗଦେବାକୁ ପ୍ରଚେଷ୍ଟା କରେ ।

ମଇ ଦିବସର ଜୀବନ୍ତ ପରମ୍ପରାକୁ ଏଯାବତ୍ କେହି ଭାଙ୍ଗିପାରିନି । ମଇ ଦିବସ ଶତବର୍ଷ ପୂର୍ତ୍ତି ଉପଲକ୍ଷେ, ୧୮୮୬ ମସିହାରେ ହୋଇଥିବା ଧର୍ମଘଟ ଓ ହେ ମାର୍କେଟ ଘଟଣାକୁ ସ୍ମରଣ କରି ଚିକାଗୋ ମ୍ୟୁନିସିପାଲିଟି ଏକ ନିଷ୍ପତ୍ତି ଗ୍ରହଣ କରିଥିଲେ । ତାହା ଥିଲା ସହରକୁ ସମ୍ପୂର୍ଣ୍ଣ ପରମାଣୁ ମୁକ୍ତ ଅଞ୍ଚଳ ଘୋଷଣା କରିବା । ଯେଉଁ ସହର ୧୦୦ବର୍ଷ ତଳେ ମଇ ଦିବସର ଜନ୍ମସ୍ଥାନ ହୋଇଥିଲା, ତାହା ୱାଂଶିଟନ କ୍ଷମତା କେନ୍ଦ୍ରର ଦୁଃସାହସିକ ଯୋଜନାକୁ ପ୍ରତିହତ କରି ଘୋଷଣା କରିଥିଲା ଯୁଦ୍ଧ ନୁହେଁ, ଆଣବିକ ଅସ୍ତ୍ର ନୁହେଁ ।

ମଇ ଦିବସ ଇତିହାସ

ମଇଦିବସ ଶ୍ରମିକ ଶ୍ରେଣୀର ଗୌରବମୟ ଏକତା ଓ ସଂଗ୍ରାମର ଇତିହାସ । ଏହାର ମୂଳଉତ୍ସ ହେଉଛି ଆଠଘଣ୍ଟା କାମର ଦାବିନେଇ ଆନ୍ଦୋଳନ । ଏହି ଦାବି ଶ୍ରମିକ ଶ୍ରେଣୀ ପାଇଁ ରାଜନୈତିକ ଗୁରୁତ୍ୱ ବହନ କରେ । ଆମେରିକା ଯୁକ୍ତରାଷ୍ଟ୍ରରେ କାରଖାନା ହେବାଦିନଠାରୁ ଏଇ ଦାବିନେଇ ଆନ୍ଦୋଳନ ହୋଇଆସିଛି । ଯଦିଓ ମଜୁରି ବୃଦ୍ଧି ଆମେରିକାରେ ପ୍ରଥମେ ଧର୍ମଘଟ ହେବାର ମୁଖ୍ୟକାରଣ ଥିଲା କିନ୍ତୁ ସମୟକ୍ରମେ ଶ୍ରମିକମାନଙ୍କୁ ବହୁ ସମୟ ଧରି କାମ କରିବାକୁ ବାଧ କରାଯାଇ ଶୋଷଣ ଓ ନିର୍ଯ୍ୟାତନା କରାଯିବାରୁ, ଦୈନିକ କାର୍ଯ୍ୟସମୟକୁ ନିର୍ଦ୍ଦିଷ୍ଟ କରାଯିବା ପାଇଁ ବ୍ୟାପକ ଆନ୍ଦୋଳନ ଦାନା ବାନ୍ଧିବାକୁ ଆରମ୍ଭ କଲା ଏବଂ ଏଇ ବ୍ୟବସ୍ଥା ବିରୁଦ୍ଧରେ ଶ୍ରମିକମାନେ ସ୍ୱର ଉତ୍ତୋଳନ କରିବାକୁ ଆରମ୍ଭ କଲେ ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଆମେରିକାର ଶ୍ରମିକମାନେ ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ କାମ କରୁଥିଲେ । ୧୪,୧୬ ଓ ୧୮ ଘଣ୍ଟା ସାଧାରଣ କାମର ସମୟ ଥିଲା । କେଉଁଠି କେଉଁଠି ମଧ୍ୟ ୧୯ଘଣ୍ଟା ବା ୨୦ ଘଣ୍ଟା କାମ କରିବାକୁ ହେଉଥିଲା । ୧୮୨୦ ଓ ୧୮୩୦ ମସିହା ମଧ୍ୟରେ ୧୦ଘଣ୍ଟା କାର୍ଯ୍ୟ ସମୟ ନିର୍ଘଣ୍ଟ କରିବା ପାଇଁ ନିର୍ଦ୍ଦିଷ୍ଟ ପ୍ରସ୍ତାବ ଦିଆଗଲା । ବିଶ୍ୱର ପ୍ରଥମ ଟ୍ରେଡ୍ ୟୁନିୟନର ମାନ୍ୟତା ଲାଭ କରିଥିବା ଫିଲାଡେଲଫିଆର ମେକାନିକ୍ ୟୁନିୟନ୍ ୧୮୨୭ ମସିହାରେ ୧୦ଘଣ୍ଟା କାମ ପାଇଁ ଦାବି କଲା । ୧୮୩୪ ମସିହାର ନ୍ୟୁୟର୍କରେ ପାଉଁରୁଟି ସେକାଳୀମାନଙ୍କର ଧର୍ମଘଟ ସମୟରେ 'ୱାର୍କମେନ୍ସ ଆଡ୍‌ଭୋକେଟ୍' ନାମକ ଏକ ଖବରକାଗଜ ପ୍ରକାଶ ପାଇଲା । ଏହି ଖବରକାଗଜରେ ଲେଖାଥିଲା, ''ପାଉଁରୁଟି ଫ୍ୟାକ୍ଟ୍ରିରେ କାର୍ଯ୍ୟରତ ଶ୍ରମିକମାନେ ବର୍ଷ ବର୍ଷ ଧରି ଇଜିପ୍ଟର କ୍ରୀତଦାସଙ୍କ ଠାରୁ ଅଧିକ ଦୁର୍ଦ୍ଦଶାରେ ସଢୁଛନ୍ତି । ୨୪ଘଣ୍ଟା ମଧ୍ୟରୁ ସେମାନଙ୍କୁ ୧୮ଘଣ୍ଟାରୁ ୨୦ଘଣ୍ଟା ପର୍ଯ୍ୟନ୍ତ କାମ କରିବାକୁ ହେଉଛି ।'' ୧୮୩୭ ମସିହାରେ ଆମେରିକାରେ ଆର୍ଥିକ ସଙ୍କଟ ଦେଖାଦେଲା । ଏହା ସତ୍ତ୍ୱେ ୧୦ଘଣ୍ଟା କାମ ସମୟର ଦାବି ନେଇ ଶ୍ରମିକମାନଙ୍କର ସ୍ୱର ଦବିଗଲା ନାହିଁ । ସରକାରୀ ପ୍ରତିଷ୍ଠାନରେ ଶ୍ରମିକମାନେ ଦିନକୁ ୧୦ଘଣ୍ଟା କାମ କରିବା ପାଇଁ ପ୍ରେସିଡେଣ୍ଟ ଭ୍ୟାନ୍ ବୁରେନ୍ ଆଇନ୍ କଲେ । କିନ୍ତୁ କଳକାରଖାନାରେ ୧୦ଘଣ୍ଟା କାମ ପାଇଁ ଶ୍ରମିକମାନଙ୍କୁ ଆହୁରି ୧୦/୧୨ ବର୍ଷ ଧରି ଆନ୍ଦୋଳନ

କରିବାକୁ ହେଲା । ୧୮୫୭ ମସିହାରେ ଆମେରିକାର ଆର୍ଥିକ ସଙ୍କଟ ଶ୍ରମିକମାନଙ୍କ ଆନ୍ଦୋଳନକୁ ବାଧାପ୍ରାପ୍ତ କରିଥିଲେ ମଧ୍ୟ ଏହି ଦାବିନେଇ ଶ୍ରମିକମାନେ ସଙ୍ଗଠିତ ହେଉଥିଲେ । କେତେ କଳକାରଖାନାରେ ଶ୍ରମିକମାନେ ସଫଳ ହେଲେ । ପୁଞ୍ଜିପତି ଶ୍ରେଣୀର ଶୋଷଣ ବିରୋଧରେ, ଏହି ଆନ୍ଦୋଳନ କେବଳ ଆମେରିକାରେ ସୀମାବଦ୍ଧ ନରହି ଅନ୍ୟସ୍ଥାନକୁ ବ୍ୟାପିଲା । ସୁଦୂର ଅଷ୍ଟ୍ରେଲିଆରେ ଗୃହ ନିର୍ମାଣ କାର୍ଯ୍ୟରେ ନିଯୁକ୍ତ (ରାଜମିସ୍ତ୍ରୀ ଇତ୍ୟାଦି) ଦାବି ଉଠାଇଲେ, ''ଆଠଘଣ୍ଟା କାମ, ଆଠଘଣ୍ଟା ଚିତ୍ତ ବିନୋଦନ ଓ ଆଠଘଣ୍ଟା ବିଶ୍ରାମ ।'' ଏହି ଦାବି ସେମାନେ ୧୮୫୬ ମସିହାରେ ହାସଲ କଲେ ।

ଆଠଘଣ୍ଟା କାମ ପାଇଁ ସଂଗ୍ରାମ

୮ଘଣ୍ଟା କାମ ପାଇଁ ଆନ୍ଦୋଳନ ପ୍ରତ୍ୟକ୍ଷଭାବେ ମଇ ଦିବସକୁ ଜନ୍ମ ଦେଇଥିଲା । କିନ୍ତୁ ଏହାର ସୂତ୍ର ୧୮୮୪ ମସିହାରେ ଯୁକ୍ତରାଷ୍ଟ୍ରରେ ଆରମ୍ଭ ହୋଇଥିବା ସାଧାରଣ ଧର୍ମଘଟରୁ ଅନୁସନ୍ଧାନ କରିବାକୁ ହେବ । ଏହାପୂର୍ବରୁ ନ୍ୟାସନାଲ ଲେବର ୟୁନିୟନ କାମର ସମୟ କମାଇବା ପାଇଁ ଏକ ବ୍ୟାପକ ଆନ୍ଦୋଳନ କରିବାକୁ ପ୍ରତିଶ୍ରୁତି ଦେଇଥିଲେ । ୧୮୬୧ରେ ଆମେରିକାରେ ଗୃହଯୁଦ୍ଧ ହେବା ଫଳରେ ମୁଷ୍ଟିମେୟ ଜାତୀୟ ୟୁନିୟନ୍ ଯଥା– ମୋଲଡରସ୍ ୟୁନିୟନ, ମେକାନିଷ୍ଟ ଏବଂ ବ୍ଲାକ୍ସ୍ମିଥ୍ ୟୁନିୟନ୍ ଭାଙ୍ଗିପଡିଲା । କିନ୍ତୁ ଏହାପରେ ଜାତୀୟ ସ୍ତରରେ ୟୁନିୟନମାନଙ୍କର ଏକତ୍ରିକରଣ କରି ଏକ ଜାତୀୟ ଫେଡେରେସନ୍ ଗଠନ ପାଇଁ ଚେଷ୍ଟା କରାଗଲା । ୨୦ଅଗଷ୍ଟ ୧୮୬୬ ମସିହାରେ ବାଲ୍ଟିମୋର ସହରରେ ୪୦ଟି ଟ୍ରେଡ୍ ୟୁନିୟନ ଏକାଠି ହୋଇ ନ୍ୟାସନାଲ ଲେବର ୟୁନିୟନ ଗଠନ କଲେ । ଏହାର ନେତୃତ୍ୱ ନେଲେ ଉଇଲିୟମ୍ ଏଚ୍ ସିଲଭିସ୍ ନାମକ ଏକ ଯୁବକ । ସେ ଶ୍ରମିକ ଆନ୍ଦୋଳନର ଜଣେ ଜଣାଶୁଣା ନେତା ଥିଲେ । ସେ ଲଣ୍ଡନରେ କାର୍ଲମାର୍କସ୍ଙ୍କ ନେତୃତ୍ୱରେ ଗଠିତ ହୋଇଥିବା 'ପ୍ରଥମ ଆନ୍ତର୍ଜାତିକ' ସହିତ ସମ୍ପର୍କ ସ୍ଥାପନ କଲେ ଏବଂ ନ୍ୟାସନାଲ ଲେବର ୟୁନିୟନ୍ର ସମ୍ପର୍କ ଆନ୍ତର୍ଜାତିକ ସାଧାରଣ ପରିଷଦ ସହ ସ୍ଥାପିତ ହେଲା । ୧୮୬୬ରେ ନ୍ୟାସନାଲ୍ ଲେବର ୟୁନିୟନର ପ୍ରଥମ କନ୍ଭେନ୍ସନ୍ରେ ୮ଘଣ୍ଟା କାମ କରିବାର ଦାବି ନେଇ ନିମ୍ନୋକ୍ତ ପ୍ରସ୍ତାବ ଗ୍ରହଣ କରାଗଲା ।

ପ୍ରଥମତଃ ଯାହାର ଆବଶ୍ୟକତା ବର୍ତ୍ତମାନ ପାଇଁ ସବୁଠାରୁ ଅଧିକ ଗୁରୁତ୍ୱ ବହନ କରେ, ତାହା ହେଉଛି ଏ ଦେଶର ଶ୍ରମିକମାନଙ୍କୁ ପୁଞ୍ଜିପତିମାନଙ୍କର ଦାସତ୍ୱରୁ ମୁକ୍ତ କରିବା । ଆମେରିକାରେ ଥିବା ୟୁନିୟନ୍ମାନଙ୍କ ପାଇଁ ସାଧାରଣ କାମ କରିବା ସମୟ ୮ଘଣ୍ଟା ହେବା ପାଇଁ ଆଇନ୍ ହେଲା । ଆମ୍ଭେମାନେ ସମ୍ପୂର୍ଣ୍ଣ ସଫଳତା ପାଇବା ପାଇଁ ଆମର ସମସ୍ତ ଶକ୍ତିକୁ ବିନିଯୋଗ କରିବାକୁ ସଂକଳ୍ପବଦ୍ଧ ।

ନ୍ୟାସନାଲ ଲେବର ୟୁନିୟନ ଆହ୍ୱାନରେ ୮ଘଣ୍ଟା କାମର ଦାବି ନେଇ ଆନ୍ଦୋଳନ ଗଢି ଉଠିଲା ଏବଂ ୮ଘଣ୍ଟା କାମ ପାଇଁ କମିଟି ଗଠିତ ହେଲା । ୧୮୬୮ରେ ବାଧ୍ୟ ହୋଇ ଆମେରିକାର କେତେକ ରାଜ୍ୟ ସରକାର ୮ଘଣ୍ଟା ଦାବିକୁ ମାନିନେଲେ ଏବଂ ଯୁକ୍ତରାଷ୍ଟ୍ର ସରକାର ଆଇନ୍ ପାସ୍ କଲେ ।

ସିଲଭିସ୍ଙ୍କ ନେତୃତ୍ୱରେ ଶ୍ରମିକ ଆନ୍ଦୋଳନ ଉଚ୍ଚ ପର୍ଯ୍ୟାୟକୁ ଯିବାକୁ ଲାଗିଲା । ସମସ୍ତ ସଂସ୍କାରବାଦ ବିରୋଧରେ ସଂଗ୍ରାମ କରି ସିଲଭିସ୍ ଶ୍ରମିକ ଶ୍ରେଣୀର ସ୍ୱାଧୀନ ରାଜନୈତିକ ସଂଗ୍ରାମ ଉପରେ ଜୋରଦେଇ ସଫଳ ହେଲେ । ସିଲଭିସ୍ଙ୍କ ପ୍ରଚେଷ୍ଟା ଫଳରେ ୧୮୬୭ରେ ହୋଇଥିବା କନ୍ଭେନ୍ସନ୍ ଆନ୍ତର୍ଜାତିକ ଶ୍ରମିକ ଶ୍ରେଣୀ ଆନ୍ଦୋଳନକୁ ସମର୍ଥନ କରିବାକୁ ପ୍ରସ୍ତାବ ଗ୍ରହଣ କରିଥିଲେ ଏବଂ ବାସ୍ଲେଠାରେ ଅନୁଷ୍ଠିତ ହେବାକୁ ଥିବା ଆନ୍ତର୍ଜାତିକ କଂଗ୍ରେସରେ ଯୋଗ ଦେବାକୁ ପ୍ରତିନିଧି ପଠାଇବାକୁ ନିଷ୍ପତ୍ତି ଗ୍ରହଣ କରିଥିଲେ । ସିଲ୍ଭିସ୍ ପ୍ରତିନିଧି ଭାବେ ଏହି କଂଗ୍ରେସରେ ଯୋଗଦେବାକୁ ଥିଲା । କିନ୍ତୁ ହଠାତ୍ ତାଙ୍କର ମୃତ୍ୟୁ ଆମେରିକାର ଶ୍ରମିକ ଆନ୍ଦୋଳନ ପ୍ରତି ଥିଲା ଶକ୍ତ ଆଘାତ । ଏହା ଫଳରେ ନ୍ୟାସନାଲ ଲେବର ୟୁନିୟନ୍ ଭାଙ୍ଗିପଡିଲା । ସିଲଭିସ୍ଙ୍କ ବଦଳରେ ଏ.ସି. କାମେରନ୍ ଓ୍ୱାର୍କିଂମେନସ୍ ଆଡଭୋକେଟ୍ ଖବରକାଗଜର ସମ୍ପାଦକଙ୍କୁ ପ୍ରତିନିଧି ଭାବରେ ପଠାଗଲା ।

୮ଘଣ୍ଟା କାମର ଦାବି ଏକ ବୈପ୍ଳବିକ ଆହ୍ୱାନ

ସିଲଭିସ୍ଙ୍କ ମୃତ୍ୟୁ ଘଟିଲେ ମଧ୍ୟ ତାଙ୍କର ବିପ୍ଳବୀ ନେତୃତ୍ୱ ଜୀବନ୍ତ ରହିଲା । ୮ଘଣ୍ଟା କାମର ସ୍ଲୋଗାନ୍ କେବଳ ଆମେରିକା ନୁହେଁ ସମଗ୍ର ବିଶ୍ୱର ଶ୍ରମିକଶ୍ରେଣୀ ପାଇଁ ହୋଇଗଲା ଏକ ବୈପ୍ଳବିକ ଆହ୍ୱାନ । ୧୮୬୬ ମସିହାରେ ଜେନେଭାଠାରେ ଅନୁଷ୍ଠିତ ପ୍ରଥମ ଆନ୍ତର୍ଜାତିକ କଂଗ୍ରେସ ଦୈନିକ ୮ଘଣ୍ଟା କାମର ଦାବିକୁ ଶ୍ରମିକ ଶ୍ରେଣୀର ମୁକ୍ତି ଆନ୍ଦୋଳନର ଏକ ପ୍ରାଥମିକ ଆବଶ୍ୟକତା ବୋଲି ନିର୍ଦ୍ଧାରଣ କଲେ । ନ୍ୟାସନାଲ ଲେବର ୟୁନିୟନର ୧୮୬୬ ଅଗଷ୍ଟ ପ୍ରସ୍ତାବ ଉପରେ ଆଧୁନିକ ବୈଜ୍ଞାନିକ ସାମ୍ୟବାଦର ଜନକ କାର୍ଲମାର୍କ୍ସ ୧୮୬୭ରେ ତାଙ୍କର 'କ୍ୟାପିଟାଲ'ର ପ୍ରଥମ ଭାଗରେ ଏ ଦାବିକୁ ପ୍ରଶଂସା କରିବା

ସହିତ ନିଗ୍ରୋ ଓ ଶ୍ୱେତ ସୈନିକମାନଙ୍କର ଏକତା ପ୍ରତି ଆହ୍ୱାନ ଦେଇ ଲେଖିଥିଲେ–

''ଆମେରିକା ଯୁକ୍ତରାଷ୍ଟ୍ରରେ ଯେପର୍ଯ୍ୟନ୍ତ ରିପବ୍ଲିକ୍‌ର ଗୋଟିଏ ଭାଗକୁ ଦାସତ୍ୱ କଳଙ୍କିତ କରୁଛି, ସେ ପର୍ଯ୍ୟନ୍ତ ଯେକୌଣସି ସ୍ୱାଧୀନ ଶ୍ରମିକ ଆନ୍ଦୋଳନ ଗଢିଉଠିଛି, ତାହା ପଙ୍ଗୁ ହୋଇଯାଇଛି । ଯେଉଁଠି କଳା ଚମଡାର ଶ୍ରମିକ ଉପରେ ଆକ୍ରମଣ ହେଉଛି, ସେଠାରେ ଧଳା ଚମଡାର ଶ୍ରମିକ କେବେହେଲେ ମୁକ୍ତି ପାଇବନାହିଁ । କିନ୍ତୁ ଦାସତ୍ୱର ମୁକ୍ତି ଭିତରୁ ଗୋଟିଏ ନୂତନ ଶକ୍ତିଶାଳୀ ଜୀବନ ବାହାରି ଆସିଲା । ଗୃହଯୁଦ୍ଧର ପ୍ରଥମ ଫଳ ହୋଇଛି ୮ଘଣ୍ଟା କାମ ପାଇଁ ଆନ୍ଦୋଳନ । ଏ ଆନ୍ଦୋଳନ ଆଟ୍‌ଲାଣ୍ଟିକ୍‌ଠାରୁ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ, ନିଉ ଇଂଲଣ୍ଡଠାରୁ କାଲିଫର୍ଣ୍ଣିଆ ପର୍ଯ୍ୟନ୍ତ ଏକ୍ସପ୍ରେସ ଗତିରେ ଦୌଡିବାକୁ ଲାଗିଲା ।''

ମାର୍କସ୍ ଦେଖାଇଛନ୍ତି କିପରି ଆମେରିକାର ବଲଟିମୋର ସହରରେ ୮ଘଣ୍ଟା କାମର ଦାବି ଗ୍ରହଣ କଲାବେଳେ ଆଟଲାଣ୍ଟିକର ଅପରପାର୍ଶ୍ୱରେ ଜେନେଭାରେ ଗୋଟିଏ ଆନ୍ତର୍ଜାତୀୟ କଂଗ୍ରେସ ସେଇ ଦାବି ଗ୍ରହଣ କରିଥିଲେ । ଅତଏବ ଆଟଲାଣ୍ଟିକର ଉଭୟ ପାର୍ଶ୍ୱର ଶ୍ରମିକ ଶ୍ରେଣୀର ଆନ୍ଦୋଳନ ସ୍ୱତଃସ୍ଫୂର୍ତ୍ତ ଏବଂ ଉତ୍ପାଦନ ବ୍ୟବସ୍ଥାରୁ ଜନ୍ମ ।

୨୩ବର୍ଷ ପରେ ଆମେରିକାର ଏହି ଶ୍ରମିକ ଆନ୍ଦୋଳନ ଆନ୍ତର୍ଜାତିକ ଆନ୍ଦୋଳନ ଉପରେ ପ୍ରଭାବ ପକାଇଲା ।

### ଆମେରିକାରେ ମଇ ଦିବସର ଜନ୍ମ

୧୮୮୪ ଅକ୍ଟୋବର ୭ତାରିଖରେ ଆମେରିକାର ଶ୍ରମିକ ସଂଗଠନମାନଙ୍କର କନ୍‌ଭେନ୍‌ସନ୍‌ରେ ମଇ ଦିବସରେ ଦିନକୁ ୮ଘଣ୍ଟା କାମର ଦାବି ଉତ୍ଥାପନ କରିବା ପାଇଁ ନିଷ୍ପତ୍ତି କରିଥିଲେ। ସେତେବେଳେ ଏହି ଶ୍ରମିକ ଅନୁଷ୍ଠାନର ନାମ ଥିଲା 'ଫେଡେରେସନ୍ ଅଫ୍ ଅର୍ଗାନାଇଜ୍ ଟ୍ରେଡସ୍ ଆଣ୍ଡ ଲେବର ୟୁନିୟନ୍ ଅଫ୍ ୟୁନାଇଟେଡ୍ ଷ୍ଟେଟସ୍ ଆଣ୍ଡ କାନାଡା । ପରେ ତା' ନାମ ହେଲା 'ଆମେରିକାନ୍ ଫେଡେରେସନ୍ ଅଫ୍ ଲେବର ।'' ସେହି କନ୍‌ଭେନ୍‌ସନ୍‌ରେ ନିମ୍ନଲିଖିତ ପ୍ରସ୍ତାବ ଗ୍ରହଣ କରାଗଲା ।

''ଫେଡେରେସନ୍ ଅଫ୍ ଅର୍ଗାନାଇଜଡ୍ ଟ୍ରେଡସ ଆଣ୍ଡ ଲେବର ୟୁନିୟନ୍ ଅଫ୍ ଦି ୟୁନାଇଟେଡ୍ ଷ୍ଟେଟସ ଆଣ୍ଡ କାନାଡାର ଏ ସମ୍ମିଳନୀ ନିଷ୍ପତ୍ତି କରୁଛି ଯେ ୧୮୮୬ ମଇ ପହିଲାଠାରୁ ଆଠ ଘଣ୍ଟା ଗୋଟିଏ ଆଇନାନୁମୋଦିତ ଦିନର କାମ ହିସାବରେ କରାଯିବ ଏବଂ ଆମେ ଶ୍ରମିକ ସଂଗଠନମାନଙ୍କୁ ପରାମର୍ଶ ଦେଉଛୁ ଯେ ସେମାନେ ତାଙ୍କର ପରିସର ମଧ୍ୟରେ ପ୍ରସ୍ତାବରେ ଏହି ନିର୍ଦ୍ଦିଷ୍ଟ ହୋଇଥିବା ସମୟ ଭିତରେ ଏ ପ୍ରସ୍ତାବ ସହିତ ଖାପ ଖାଇବା ପରି ସେମାନଙ୍କର ଆଇନକାନୁନ୍ ପରିଚାଳିତ କରିବେ ।''

ସେତେବେଳେ ଏ ଅନୁଷ୍ଠାନର ସଭ୍ୟ ସଂଖ୍ୟା ଥିଲା ୫୦ହଜାର । ତେଣୁ ସେମାନେ ନିଜ ଇଚ୍ଛାନୁସାରେ ଦିନକୁ ୮ଘଣ୍ଟା କାମ ଦାବିକୁ କାର୍ଯ୍ୟକାରୀ କରିପାରନ୍ତେ ନାହିଁ । ସେମାନଙ୍କୁ ଏ ଦିଗରେ ସଂଗ୍ରାମ କରିବାକୁ ପଡିବ ବୋଲି ସେମାନେ ଧରିନେଲେ। ୧୮୮୬ ମସିହା ମଇ ପହିଲା ଦିନ ଏ ଦାବି ଉପରେ ଧର୍ମଘଟ କରିବାର ମସୁଧା ହେଲା । ଧର୍ମଘଟ ଡାକରା କିନ୍ତୁ ଦିଆଯାଇ ନଥିଲା । ଫେଡେରେସନ୍ ପ୍ରସ୍ତାବରେ ଷ୍ଟ୍ରାଇକ୍ ପାଣ୍ଠି ଉଠାଇବା ପାଇଁ ପ୍ରତ୍ୟେକ ୟୁନିୟନକୁ ନିର୍ଦ୍ଦେଶ ଦିଆଯାଇଥିଲା ।

### ମଇ ଦିବସ ଧର୍ମଘଟ ପାଇଁ ପ୍ରସ୍ତୁତି

୧୮୮୦–୧୮୯୦ ମସିହା ଆମେରିକାରେ ଶିଳ୍ପ ସଂଖ୍ୟା ବୃଦ୍ଧି ପାଇଥିଲେ ମଧ୍ୟ ଆର୍ଥିକ ମାନ୍ଦାବସ୍ଥା ଶ୍ରମିକ ଶ୍ରେଣୀ ଉପରେ ଗଭୀର ପ୍ରଭାବ ପକାଇଥିଲା ଓ ବେକାର ଲୋକେ ଏହି ଆନ୍ଦୋଳନରେ ସାମିଲ ହେଲେ । ୧୮୭୭ରେ ରେଳ ଓ ଲୁହାଶିଳ୍ପର ହଜାର ହଜାର ଶ୍ରମିକ ଧର୍ମଘଟ ଆରମ୍ଭ କଲେ । ଏହା ହେଉଛି ଆମେରିକା ଶ୍ରମିକ ଶ୍ରେଣୀର ଦେଶବ୍ୟାପୀ ଆନ୍ଦୋଳନ । ଆମେରିକା ସରକାର ଓ ପୁଞ୍ଜିବାଦୀ ଶ୍ରେଣୀ ଏହାକୁ ଦମନ କରିବା ପାଇଁ ସବୁ ପ୍ରକାର ଚେଷ୍ଟା କଲେ । ଆନ୍ଦୋଳନ ବିଫଳ ହେଲା କିନ୍ତୁ ଶ୍ରମିକଶ୍ରେଣୀ ବୁଝି ପାରିଲେ ଯେ ସରକାର ଓ ପୁଞ୍ଜିପତି ଶ୍ରେଣୀ ଏକ । ସେମାନେ ନିଜ ଶ୍ରେଣୀର ଅବସ୍ଥା ଓ ଭୂମିକାକୁ ଆପଣାର ଅଭିଜ୍ଞତାରୁ ଉପଲବ୍ଧି କଲେ । ଧର୍ମଘଟ ବିଫଳ ହେଲେ ମଧ୍ୟ ସେମାନେ ରାଜନୈତିକ ଭାବେ ଆହୁରି ସଚେତନ ହେଲେ ।

୧୮୭୫ ମସିହାରେ ପେନ୍‌ସିଲଭେନିଆର କୋଇଲା ଖଣି ମାଲିକମାନେ ଶ୍ରମିକମାନଙ୍କର ସଙ୍ଗଠନକୁ ଦମନ କରିବା ପାଇଁ ମଲମୋଗୁରାସ ୧୦ଜଣ ଲଢୁଆ ଖଣି ଶ୍ରମିକମାନଙ୍କୁ ଫାଶିଖୁଣ୍ଟରେ ଝୁଲାଇ ଦେଲେ ।

ଆମେରିକାନ୍ ଫେଡେରେସନ୍ ଅଫ୍ ଲେବର ଦେଖିଲେ ଯେ ୮ଘଣ୍ଟା କାମର ଦାବି ଉପରେ ଫେଡେରେସନ୍ ବାହାରେ ଥିବା ଓ ନାଇଟ୍‌ସ୍ ଅଫ୍ ଲେବର (ଆଉ ଗୋଟିଏ ପୁରୁଣା ସଂଗଠନ) ଭିତରେ ଥିବା ଶ୍ରମିକମାନଙ୍କୁ ମଧ୍ୟ ଗୋଟିଏ ମଞ୍ଚରେ ଏକ୍‌ଜୁଟ କରିହେବ । ଏହିପରି ଏକ ମିଳିତ ସାଧାରଣ ସଂଗ୍ରାମ ଜରିଆରେ ହିଁ ସେମାନଙ୍କର ଦାବି ଆଦାୟର ପଥ ସୁଗମ ହେବ ।

୧୮୮୫ ଫେଡେରେସନ୍ କନ୍‌ଭେନ୍‌ସନରେ ଆସନ୍ତା ବର୍ଷ ମଇ ପହିଲା ଦିନ କାରଖାନା ଛାଡି ଚାଲି ଆସିବା ପାଇଁ ନିଷ୍ପତ୍ତି ପୁଣି ଥରେ ଗ୍ରହଣ କରାଗଲା । କାଠ କାରିଗର ଓ ସିଗାରେଟ୍ ଶ୍ରମିକ ପ୍ରଭୃତି ସଂଗ୍ରାମ ପାଇଁ ପ୍ରସ୍ତୁତ ହେଲେ । ଏଇ ଆନ୍ଦୋଳନ ଉପରେ ପ୍ରତ୍ୟେକ ୟୁନିୟନର ସଭ୍ୟ ସଂଖ୍ୟା ବଢିବାକୁ ଲାଗିଲା । ନାଇଟ୍ ଅଫ୍ ଲେବରର ସଂଖ୍ୟା ୨ଲକ୍ଷରୁ ବୃଦ୍ଧି ପାଇ ଏହି ସମୟରେ ୭ଲକ୍ଷ ହେଲା । ଫେଡେରେସନ୍ ଧର୍ମଘଟର ତାରିଖ ଧାର୍ଯ୍ୟ କରିବାକୁ ସ୍ଥିର କଲେ । କିନ୍ତୁ ଜଣା ପଡିଲା ଯେ ନାଇଟ୍ ଅଫ୍ ଲେବରର ନେତା ଟେରେନ୍‌ସ ପାଉଡରଲି ଧର୍ମଘଟ ବିରୋଧରେ ଗୁପ୍ତ ଭାବରେ ପ୍ରଚାର କରୁଛନ୍ତି । ଏହା ଜଣାପଡିବା ପରେ ତାଙ୍କର ଲୋକପ୍ରିୟତା ହ୍ରାସ ପାଇଲା କିନ୍ତୁ ୟୁନିୟନର ଶ୍ରମିକମାନେ ଧର୍ମଘଟରେ ଯୋଗ ଦେବାକୁ ସ୍ଥିର କଲେ । ଫେଡେରେସନ୍‌ର ଲୋକପ୍ରିୟତା ବୃଦ୍ଧି ପାଇଲା । ୮ଘଣ୍ଟା ଲାଗି ସଂଗ୍ରାମ ପରିଷଦ ଗଢିଉଠିଲା । ଶ୍ରମିକମାନଙ୍କ ମଧ୍ୟରେ ଏକ ନୂତନ ସଂଗ୍ରାମୀ ମନୋଭାବ ଦେଖାଗଲା । ଶ୍ରମିକମାନଙ୍କର ସଂଗ୍ରାମ ହେଉଛି ଏକମାତ୍ର ମାପକାଠି, ଏହା ସେମାନେ ଉପଲବ୍ଧି କରି ନୂତନ ଉତ୍ସାହରେ ଏହାର ସଫଳତା ପାଇଁ ଲାଗିପଡିଲେ ।

ଧର୍ମଘଟ ପ୍ରସ୍ତୁତି ବ୍ୟାପକ ହେଲା

୧୮୮୫ ଓ ୧୮୮୬ ମସିହାରେ ପୂର୍ବବର୍ଷ ତୁଳନାରେ ଅଧିକ ଧର୍ମଘଟ ହୋଇଥିଲା । ୧୮୮୧-୮୪ ମଧ୍ୟରେ ଧର୍ମଘଟ ଓ ତାଲା ବନ୍ଦ ହାରାହାରି ୫୦୦ରୁ କମ୍ ଥିବାବେଳେ ବାର୍ଷିକ ପ୍ରାୟ ୧,୫୦,୦୦୦ ଶ୍ରମିକ ଏଥିରେ ଅଂଶଗ୍ରହଣ କରିଥିଲେ । କିନ୍ତୁ ୧୮୮୫ରେ ଧର୍ମଘଟ ଓ ତାଲାବନ୍ଦ ୭୦୦କୁ ବୃଦ୍ଧି ପାଇଲା ଏବଂ ଏଥିରେ ୨,୫୦,୦୦୦ ଶ୍ରମିକ ଭାଗନେଲେ । ୧୮୮୬ରେ ଧର୍ମଘଟର ସଂଖ୍ୟା ଦ୍ୱିଗୁଣିତ ହୋଇ ୧୫୭୨ ହେଲା ଏବଂ ପ୍ରାୟ ୬ଲକ୍ଷ ଶ୍ରମିକ ଏଥିରେ ଯୋଗଦେଲେ । ୧୮୮୫ ମସିହାରେ ୨୪୬୭ ଗୋଟି ପ୍ରତିଷ୍ଠାନ ଧର୍ମଘଟ ଦ୍ୱାରା ପ୍ରଭାବିତ ହୋଇଥିବା ବେଳେ ୧୮୮୬ରେ ଏ ସଂଖ୍ୟା ଥିଲା ୧୧,୫୬୨ । ଧର୍ମଘଟର କେନ୍ଦ୍ର ହେଲା ଚିକାଗୋ ସହର । ଏହା ବ୍ୟତୀତ ନ୍ୟୁୟର୍କ, ବଲଟିମୋର, ୱାଶିଂଟନ୍, ମିଲୱାଇକି, ପିଟସବର୍ଗ ଓ ଡେଟ୍ରିଅଟ୍ ପ୍ରଭୃତି ଅନେକ ସହରରେ ଧର୍ମଘଟ ଦେଖାଦେଲା । ଏହାର ବିଶେଷତ୍ୱ ଏହି ଯେ ଧର୍ମଘଟରେ ଅଦକ୍ଷ ଓ ଅସଂଗଠିତ ଶ୍ରମିକମାନେ ବିଶେଷ ଭାଗ ନେଲେ । ଚାରିଆଡେ ବିଦ୍ରୋହର ବାତ୍ୟା ବହିଲା ଓ ଧର୍ମଘଟର ଜୁଆର ଛୁଟିଲା । ଦେଶ ଭିତରେ ଗୋଟିଏ ସାମାଜିକ ଯୁଦ୍ଧ ଲାଗିଲା ବୋଲି ବୁର୍ଜୁଆ ଲେଖକମାନେ ବର୍ଣ୍ଣନା କଲେ । ମଇ ଦିବସରେ ଯୋଗ ଦେଇଥିବା ପ୍ରାୟ ଅଧେ ଶ୍ରମିକ ୮ଘଣ୍ଟା ଦାବି ହାସଲ କଲେ ଓ ଅଧିକାଂଶ ସ୍ଥାନରେ କାମର ଘଣ୍ଟା କମିଲା ।

ଚିକାଗୋର ଧର୍ମଘଟ ଓ 'ହେ ମାର୍କେଟ'

ମଇ ପହିଲା ଦିନ ଚିକାଗୋରେ ସବୁଠାରୁ ଲଢୁଆ ଧର୍ମଘଟ ହେଲା କାରଣ ସେଠାରେ ବାମପନ୍ଥୀମାନଙ୍କର ଶକ୍ତି ଥିଲା ବେଶୀ । ଧର୍ମଘଟର ବହୁପୂର୍ବରୁ ୮ଘଣ୍ଟା କାମ ଆସୋସିଏସନ୍ ଗଢାଯାଇଥିଲା । ଏହା ଥିଲା ସମସ୍ତଙ୍କର ଏକ ମିଳିତ ସାମ୍ମୁଖ୍ୟ । ଏଥିରେ ଥିଲେ ଫେଡେରେସନ୍, ନାଇଟ ଅଫ୍ ଲେବର ଓ ଆମେରିକା ଶ୍ରମିକର ପ୍ରଥମ ସୋସିଆଲିଷ୍ଟ ପାର୍ଟି । ମଇ ପହିଲା ପଡିଲା ସୋମବାର ଦିନ । ରବିବାର ଦିନ କେନ୍ଦ୍ର ଶ୍ରମିକ ୟୁନିୟନ (ବାମପନ୍ଥୀମାନଙ୍କର ସଙ୍ଗଠନ) ଗୋଟିଏ ସଭା ଓ ଶୋଭାଯାତ୍ରା କଲେ । ସେଥିରେ ୪୦ ହଜାର ଶ୍ରମିକ ଯୋଗ ଦେଇଥିଲେ ।

ମଇ ପହିଲାରେ ପ୍ରାୟ ସାଢେ ୩ଲକ୍ଷ ଶ୍ରମିକ ନିଜର ହାତ ହତିଆର ରଖି ବାହାରିଲେ । ଆମେରିକାର ଶ୍ରମିକ ଆନ୍ଦୋଳନରେ ଏହା ଥିଲା ଏକ ଅଭିନବ ଘଟଣା । ୮ଘଣ୍ଟାର କାମ ଦାବି ଉପରେ ସମସ୍ତେ ଏକଜୁଟ ହେଲେ । ଶ୍ରମିକ ଶ୍ରେଣୀର ମାଲିକ ଓ ସରକାର ଚୁପ୍ ହୋଇ ବସିଲେ ନାହିଁ । ଶ୍ରମିକ ଆନ୍ଦୋଳନକୁ ଧ୍ୱଂସ କରିବା ପାଇଁ ସମସ୍ତ ଶକ୍ତି ଖଟାଇଲେ । ଚିକାଗୋ ଶ୍ରମିକ ଆନ୍ଦୋଳନକୁ ଏକ ମରଣାନ୍ତକ ଆଘାତ ଦେବା ପାଇଁ ସମସ୍ତ ପ୍ରକାର କୌଶଳ ଅବଲମ୍ବନ କଲେ । ବୁର୍ଜୁଆ ଖବର କାଗଜମାନେ ଶ୍ରମିକ ଆନ୍ଦୋଳନରେ ନେତାମାନଙ୍କ ବିରୋଧରେ କୁତ୍ସା ପ୍ରଚାର କଲେ । ମଇ ୧ତାରିଖ ୧୮୮୬ ମସିହା 'ଚିକୋଗୋ ମେଲ'ରେ ପ୍ରକାଶ ପାଇଲା, ଦୁଇଜଣ ଦୁର୍ଦ୍ଧର୍ଷ ହତ୍ୟାକାରୀ, ଦୁଇଜଣ ଭୀରୁ ଅନ୍ୟମାନଙ୍କ ପଶ୍ଚାତ୍‌ରେ ରହି ସହରରେ ଗଣ୍ଡଗୋଳ ଉପୁଯାଉଛନ୍ତି । ସେମାନଙ୍କର ନାମ ହେଲା ଆଲବର୍ଟ ଆର ପାର୍ସନ ଏବଂ ଅଗଷ୍ଟ ସ୍ପାଇଜ୍ । ଯଦି କୌଣସି ଅଘଟଣ ଘଟେ, ତେବେ ଭଦ୍ର ନାଗରିକମାନେ ଉଦାହରଣ ସ୍ୱରୂପ ଏଇ ଦୁଇଜଣଙ୍କୁ ଧରିବେ ।" ଚିକାଗୋ ସମ୍ବାଦପତ୍ର ଶ୍ରମିକମାନଙ୍କ ଉପରେ କଠୋର କାର୍ଯ୍ୟାନୁଷ୍ଠାନ ଏବଂ ଚାକିରିରୁ ବହିଷ୍କାର କରିବାର ଧମକ ପ୍ରକାଶ କଲେ ।

ଚିକାଗୋ ସହରର ଗଳିକନ୍ଦି, ରାସ୍ତାଘାଟ ମଇ ପହିଲା ଦିନ ସୈନ୍ୟ ଓ ପୁଲିସ ଛାଉଣୀରେ ଭର୍ତ୍ତି ହୋଇଯାଇଥିଲା ।

ହଜାର ହଜାର ସଂଖ୍ୟାରେ ଶ୍ରମିକ ଏହାକୁ ଭ୍ରୂକ୍ଷେପ ନକରି ଚିକାଗୋ ରାସ୍ତା ଉପରକୁ ଅଜାଡି ହୋଇପଡିଲେ । ସେଦିନ ଆମେରିକାର ଏପରି କୌଣସି ସହର ନଥିଲା, ଯେଉଁଠାରେ ଶ୍ରମିକମାନେ ବିକ୍ଷୋଭ କରି ନଥିଲେ ।

କିନ୍ତୁ ଦୁଇଦିନ ପରେ ୩ ତାରିଖ ଦିନ ଚିକାଗୋ ଶିଳ୍ପପତିମାନେ ପାଲଟା ଆକ୍ରମଣ କଲେ । ଅନେକଗୁଡିଏ କାରଖାନାର ମାଲିକ ଘୋଷଣା କଲେ ଯେ ଯେଉଁମାନେ ଧର୍ମଘଟରେ ଯୋଗ ଦେଇଥିଲେ, ସେମାନଙ୍କ ଉପରକୁ ଗୁଳି ବର୍ଷଣ କରାଯିବ । ମ୍ୟାକ୍ କରମିକ ହାରଭେଷ୍ଟ ପ୍ଲାଣ୍ଟର ଧର୍ମଘଟକାରୀ ୩୦୦ଶ୍ରମିକଙ୍କୁ ପୋଲିସ କର୍ଡନ ମଧ୍ୟରେ ରାସ୍ତା ଉପରକୁ ଅଣାଗଲା । ଏହାକୁ ପ୍ରତିରୋଧ କରିବା ପାଇଁ ନିକଟସ୍ଥ କାଠ କାରଖାନାମାନଙ୍କରୁ ଶ୍ରମିକମାନେ ଆସି ଶାନ୍ତିପୂର୍ଣ୍ଣ ବିକ୍ଷୋଭ କଲେ । ପୋଲିସ ନିରସ୍ତ୍ର ଶ୍ରମିକମାନଙ୍କ ଉପରେ ଗୁଳିଚାଳନା କରିବା ଫଳରେ ୬ଜଣ ଶ୍ରମିକ ମୃତ୍ୟୁବରଣ କଲେ ଓ ଅନେକ କ୍ଷତାକ୍ତ ହେଲେ ।

ମଇ ୪ତାରିଖରେ ତା'ର ପ୍ରତିବାଦ କରିବା ପାଇଁ ଚିକାଗୋର 'ହେ ମାର୍କେଟ' ସ୍କୋୟାରରେ ସଭା ହେଲା । ସଭା ସରିଲାବେଳକୁ ଜଣେ ଅଜ୍ଞାତ ବ୍ୟକ୍ତି ବୋମା ଫୋପାଡିବା ଫଳରେ ୭ଜଣ ପୋଲିସ ଓ ୪ଜଣ ଶ୍ରମିକ ମୃତ୍ୟୁ ମୁଖରେ ପଡିଲେ ଓ ବହୁ ଲୋକ ଆହତ ହେଲେ । ସମବେତ ଜନତା ଉପରେ ଚାଲିଲା ନୃଶଂସ ଆକ୍ରମଣ । ଶ୍ରମିକ ରକ୍ତରେ ହେ ମାର୍କେଟ ସ୍କୋୟାର ଲାଲ ହୋଇ ଉଠିଲା । ପୋଲିସ ବହୁ ଶ୍ରମିକମାନଙ୍କୁ ଧରିନେଲେ । ଶ୍ରମିକ ଆନ୍ଦୋଳନକୁ ଦମନ କରିବା ପାଇଁ ଅଜବ ମିଛ ଓ ଆତଙ୍କଜନକ ପ୍ରଚାର କରାଗଲା । ଶ୍ରମିକ ନେତାଙ୍କ ବିରୋଧରେ ମିଥ୍ୟା ମକଦ୍ଦମା ରୁଜୁ କରାଗଲା । ସେମାନେ ହେଲେ ଆଲବର୍ଟ ଆର. ପାରସନସ, ଅଗଷ୍ଟ ସ୍ପାଇଜ, ସାମୁଏଲ ଜେ ଫିଲଡେନ୍, ୟଜେନ ସ୍କାଓ୍ୱାନ, ଆଡଲଫ ଫିସର, ଜର୍ଜ ଏଞ୍ଜେଲସ, ଲୁଇଲିଙ୍ଗ ଓ ଓସ୍କାର ନିବେ । ଏମାନଙ୍କର ବିଚାର ଗୋଟିଏ ପ୍ରହସନ ଥିଲା । ପରେ ଜଣା ପଡିଲା ଯେ ପୋଲିସର ସାକ୍ଷୀଙ୍କୁ ଲାଞ୍ଚ ଦିଆଯାଇଥିଲା । ସେଦିନ ଫିଲଡେନ୍‌ଙ୍କ ବ୍ୟତୀତ ଅନ୍ୟ ସମସ୍ତ ନେତା ସଭାସ୍ଥଳ ଛାଡି ଚାଲିଯାଇଥିଲେ । ବିଚାରରେ ୭ଜଣଙ୍କୁ ଫାଶୀ ଓ ନିବେଙ୍କୁ ୧୫ବର୍ଷ ଜେଲ ହେଲା ।

୧୮୮୭ ନଭେମ୍ବର ୧୧ ତାରିଖ ଦିନ ଶ୍ରମିକ ନେତା ପାରସନସ୍, ସ୍ପାଇଜ, ଫସର ଓ ଏଞ୍ଜେଲସଙ୍କୁ ଫାଶୀ ଦିଆଗଲା । ଜେଲ୍‌ଖାନାର ଏକ ନିଭୃତ କୋଠରୀରେ 'ଲିଙ୍ଗ'କୁ ମରି ପଡିଥିବାର ଦେଖାଗଲା । ପୋଲିସ କହିଲା ଯେ ଲିଙ୍ଗ ଆତ୍ମହତ୍ୟା କରିଥିଲେ । ଶ୍ରମିକ ଆନ୍ଦୋଳନକୁ ଦମନ କରିବା ପାଇଁ ଏହା ଥିଲା ସୁପରିକଳ୍ପିତ ନିର୍ମମ ଅତ୍ୟାଚାର । ଗଣତନ୍ତ୍ରର ପୂଜାରୀ ବୋଲାଉଥିବା ଆମେରିକାର କୋର୍ଟ ଓ ନ୍ୟାୟ ବ୍ୟବସ୍ଥା ପୁଞ୍ଜିବାଦର ନିର୍ଲଜ ଦଲାଲ ଓ ଆତତାୟୀ ପରି କାର୍ଯ୍ୟ କଲେ ।

ବନ୍ଦୀମାନଙ୍କ ବିଚାର ପ୍ରହସନ ବିରୋଧରେ ବିଶ୍ୱବ୍ୟାପୀ ଆନ୍ତର୍ଜାତିକ ସଂହତିର ସ୍ୱର ଗୁଞ୍ଜରିତ ହେଲା । ସେମାନଙ୍କର ପ୍ରଚେଷ୍ଟା ଆଶିଂକ ସଫଳ ହେଲା । ଫିଲଡେନ୍ ଓ ସ୍କୋଓ୍ୱାବଙ୍କର ଦଣ୍ଡ କୋହଳ କରାଯାଇ ଆଜୀବନ କାରାଦଣ୍ଡ ହେଲା ।

ଶ୍ରମିକ ନେତାମାନେ ବୀରତ୍ୱପୂର୍ଣ୍ଣ ଭାବେ ଫାଶୀଖୁଣ୍ଟର ସାମନା କଲେ । ପାରସର ଫାଶୀଖୁଣ୍ଟରୁ ବଡ ପାଟିରେ କହିଲେ, 'ଆମେରିକାର ଜନସାଧାରଣ ! ଲୋକମାନଙ୍କର ପ୍ରତିବାଦର ସ୍ୱର ଉଠାଅ ଓ ଭାଇମାନେ ! ସ୍ପାଇଜ ଚିତ୍କାର କରି କହିଲେ, ''ତମେ ମୋର ସ୍ୱରକୁ ଆଜି ବନ୍ଦ କରି ଦେଇପାର । କିନ୍ତୁ ଦିନ ଆସିବ ଯେତେବେଳେ ଆମର ନୀରବତା ତମେ ଆଜି ଚିପି ଦେଉଥିବା ସ୍ୱରଠାରୁ ବହୁ ଶକ୍ତିଶାଳୀ ହେବ ।''

ମଇ ଦିବସ ଆନ୍ତର୍ଜାତିକ ଦିବସ ହେଲା

୧୮୮୯ ଜୁଲାଇ ୧୪ ତାରିଖ ଦିନ ପ୍ୟାରିସ ସହରରେ ବିଭିନ୍ନ ଦେଶର ସୋସିଆଲିଷ୍ଟ ଆନ୍ଦୋଳନର ପ୍ରତିନିଧିମାନଙ୍କର ଏକ ବୈଠକ ହେଲା । ଏଥିରେ ଦ୍ୱିତୀୟ ଆନ୍ତର୍ଜାତିକ ଗଠିତ ହେଲା । ଆମେରିକା ଶ୍ରମିକ ଶ୍ରେଣୀର ବୀରତ୍ୱ ପୂର୍ଣ୍ଣ ମଇଦିବସ ସଂଗ୍ରାମରେ ଅନୁପ୍ରାଣିତ ହୋଇ ଦ୍ୱିତୀୟ ଆନ୍ତର୍ଜାତିକ ୧୮୯୦ ମସିହା ମଇ ପହିଲାରୁ ଆନ୍ତର୍ଜାତିକ ଶ୍ରମିକ ଦିବସ ରୂପେ ପାଳନ କରିବାକୁ ନିଷ୍ପତ୍ତି ନେଲେ, ସେହିଦିନଠାରୁ ବିଭିନ୍ନ ରାଷ୍ଟ୍ରରେ ମଇ ପହିଲାକୁ ଆନ୍ତର୍ଜାତିକ ଶ୍ରମିକ ଦିବସ ଭାବେ ପାଳନ କରାଯାଉଛି ।

୨୫ଜୁନ୍, ୧୮୯୩ ମସିହାରେ ହେ ମାର୍କେଟ' ସହିତ ଓ ଚିକାଗୋର ସର୍ବହରା ନେତାଙ୍କ ଏକ ସ୍ମୃତି ସୌଧ ଉଦ୍‌ଘାଟିତ ହେଲା । ସେହିଦିନ ଇଲିନିୟସର ଗଭର୍ଣ୍ଣର ଆଲବୋଲ୍ଟ ନ୍ୟାୟପାଳିକାର ନିଷ୍ପତ୍ତିକୁ ଅବୈଧ ଘୋଷଣା କରି ସମସ୍ତ ବନ୍ଦୀମାନଙ୍କୁ ମୁକ୍ତ କଲେ ।

ମଇ ପହିଲା ୧୮୮୬ ଆନ୍ତର୍ଜାତିକ ଶ୍ରମିକ ଶ୍ରେଣୀର ଇତିହାସର ଏକ ଦିପ୍ତୀମାନ ଆଲୋକବର୍ତ୍ତିକା ଭାବେ ଶ୍ରମିକ ଶ୍ରେଣୀକୁ ଉଦ୍‌ବୁଦ୍ଧ କରୁଛି ।

ଭାରତରେ ଦିବସ ଓ ଶ୍ରମିକ ଶ୍ରେଣୀର ଆନ୍ଦୋଳନ

ଭାରତରେ ଦିବସ ଓ ଶ୍ରମିକ ଶ୍ରେଣୀର ଆନ୍ଦୋଳନ ମଇ ଦିବସ ପାଳନ ହେବାର ୧୨୨ ବର୍ଷ ପୂର୍ଣ୍ଣ ହୋଇଗଲାଣି ।

ଆନ୍ତର୍ଜାତୀୟ ଶ୍ରମିକ ଦିବସ ଭାବେ ମଇ ଦିବସକୁ ପାଳନ କଲାବେଳେ ଏହି ଦୀର୍ଘବର୍ଷ ମଧ୍ୟରେ ଆମ ଦେଶରେ ଓ ବିଶ୍ୱରେ ଅନେକ ପରିବର୍ତ୍ତନ ଘଟିଯାଇଛି । ମଇ ଦିବସ ହେଉଛି ଶ୍ରମିକ ଶ୍ରେଣୀର ଗୌରବମୟ ଏକତାର ଓ ସଂଗ୍ରାମର ଦିବସ । ମଇ ଦିବସ ପାଳନ କରିବା ବେଳେ ଆମେ ସ୍ୱତଃସ୍ଫୂର୍ତ୍ତ ଭାବରେ ମନେପକାଉ ଅତୀତର ସେହି ଦିନଟିକୁ ଅର୍ଥାତ୍ ୧୮୮୬ ମେ ୧ ତାରିଖ, ଯେଉଁଦିନ ଆମେରିକାର ଚିକାଗୋ ସହରର ହେ ମାର୍କେଟରେ ଆଠ ଘଣ୍ଟା କାମ ପାଇଁ ଶ୍ରମିକମାନଙ୍କ ଉପରେ ଅମାନୁଷିକ ଗୁଳିଚାଳନା କରାଯାଇ ଶ୍ରମିକ ରକ୍ତରଞ୍ଜିତ ହୋଇଥିଲା । ୧୮୮୯ ଜୁଲାଇ ୧୪ ତାରିଖରେ ପ୍ୟାରିସଠାରେ ଅନୁଷ୍ଠିତ ହେଲା ଦ୍ୱିତୀୟ ଆନ୍ତର୍ଜାତିକ ଏବଂ ଏହି ଆନ୍ତର୍ଜାତିକ ଆମେରିକା ଶ୍ରମିକ ଶ୍ରେଣୀର ବୀରତ୍ୱପୂର୍ଣ୍ଣ ମଇ ଦିବସ ସଂଗ୍ରାମରେ ଅନୁପ୍ରାଣିତ ହୋଇ ୧୮୯୦ ମସିହାଠାରୁ ମଇ ପହିଲାକୁ ଆନ୍ତର୍ଜାତିକ ଶ୍ରମିକ ଦିବସ ଭାବେ ପାଳନ କରିବାକୁ ।

୧୯୨୦ ମସିହାରେ ଏଆଇଟିୟୁସି ଜନ୍ମଲାଭ କଲା । ୧୯୨୩ ମସିହା ମେ ୧ ତାରିଖ ଦିନ ମାନ୍ଦ୍ରାଜଠାରେ ପ୍ରଥମ ମଇ ଦିବସ ଲେବର କିଷାନ ପାର୍ଟି ଅଫ୍ ହିନ୍ଦୁସ୍ଥାନ ପକ୍ଷରୁ ସଙ୍ଗଠିତ ହେଲା । ଭାରତରେ ପ୍ରଥମ ଥର ପାଇଁ ଏହି ଦିନ ଲାଲ ପତାକା ଉଡିଲା । ପାର୍ଟିର ନେତା ସିଙ୍ଗାରଭେଲୁ ଚେଟିୟାର ୧୯୨୩ ମଇ ପହିଲାକୁ ଦୁଇଟି ସ୍ଥାନରେ ପାଳନ କରିଥିଲେ । ମାନ୍ଦ୍ରାଜ ହାଇକୋର୍ଟର ସମୁଦ୍ର କୂଳରେ ଗୋଟିଏ ପାଳନ ହେବା ବେଳେ ଅନ୍ୟଟି ଥିଲା ଟ୍ରିପିକ୍ଲେନ ସମୁଦ୍ରକୂଳ ! ଏ ସମ୍ପର୍କରେ ହିନ୍ଦୁ ପତ୍ରିକାରେ ପ୍ରକାଶ ପାଇଲା ଲେବର କିଷାନ ପାର୍ଟି ମାନ୍ଦ୍ରାଜରେ ମଇ ଦିବସ ପାଳନ ଆରମ୍ଭ କରିଛି । କମ୍ରେଡ ସିଙ୍ଗାଇଭେଲୁ ଏହି ସଭାରେ ସଭାପତିତ୍ୱ କରିଥିଲେ । ଗୋଟିଏ ପ୍ରସ୍ତାବ ଗ୍ରହଣ ହୋଇ କୁହାଯାଇଥିଲା ଯେ ସରକାର ମଇ ଦିବସକୁ ଛୁଟିଦିବସ ଘୋଷଣା କରନ୍ତୁ । ପାର୍ଟିର ସଭାପତି ପାର୍ଟିର ଅହିଂସା ନୀତି ସମ୍ପର୍କରେ ସୂଚନା ଦେଇଥିଲେ। ଆର୍ଥିକ ସାହାଯ୍ୟ ଦେବା ପାଇଁ ଅନୁରୋଧ ଆସିଥିଲା । ସେଥିରେ ଗୁରୁତ୍ୱ ଦେଇ କୁହାଯାଇଥିଲା ଯେ ବିଶ୍ୱର ଶ୍ରମିକ ଶ୍ରେଣୀ ନିଶ୍ଚୟ ଏକତ୍ରିତ ହୋଇ ସ୍ୱାଧୀନତା ପାଇବେ ।

୧୯୨୫ ମସିହା ଫେବୃଆରୀ ମାସରେ ଏଆଇଟିୟୁସିର ଅନୁଷ୍ଠିତ ପଞ୍ଚମ ସମ୍ମିଳନୀରେ ୪୮ ଘଣ୍ଟା କାର୍ଯ୍ୟ ସମୟ ପାଇଁ ମତପ୍ରକାଶ ପାଇଲା । କିନ୍ତୁ ଏହା କାର୍ଯ୍ୟକାରୀ ହେଲା ସ୍ୱାଧୀନତା ପରେ ୧୯୪୮ ମସିହାରେ ଯେତେବେଳେ ଫ୍ୟାକ୍ଟ୍ରି ଆଇନରେ ପରିବର୍ତ୍ତନ କରାଯାଇ ଦିନକୁ ଆଠ ଘଣ୍ଟା ଧାର୍ଯ୍ୟ କରାଗଲା । ଓଡ଼ିଶାରେ ୧୯୪୬ ମସିହାରେ ପ୍ରଥମେ ଏଆଇଟିୟୁସି ଶ୍ରମିକ ସଂଗଠନ ଗଠନ କରାଗଲା । କିନ୍ତୁ ଏହା ପୂର୍ବରୁ ୧୯୩୯ରେ ପ୍ରଥମ ଟ୍ରେଡ ୟୁନିୟନ ଭାବେ କଟକ ପ୍ରେସ କର୍ମଚାରୀ ସଂଘ ଜନ୍ମଲାଭ କରିଥିଲା। ୧୯୩୯ ମସିହାରେ ପୁରୀରେ ମେହେନ୍ତରମାନେ ଧର୍ମଘଟ କରିଥିଲେ । ତାହା ଥିଲା ଓଡ଼ିଶାରେ ପ୍ରଥମ ଧର୍ମଘଟ । ଓଡ଼ିଶାରେ କେବେଠାରୁ ମଇ ଦିବସ ପାଳନ ହେଲା ତାହା ସଠିକ୍ ଭାବରେ ଜଣାନଥିଲେ ମଧ୍ୟ ୧୯୩୯ ବା ୧୯୪୬ରୁ ଏହା ସମ୍ଭବତଃ ପାଳିତ ହୋଇଆସୁଛି । କେହି କେହି ୧୯୫୨ ମସିହାରେ ଏହା ପାଳନ ହେଉଥିବାର କହିଥାନ୍ତି ।

ଲେନିନଙ୍କ ମତରେ ମଇ ଦିବସ ସମାରୋହ ହେଉଛି ଘଟଣାମାନଙ୍କ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସମସ୍ତ ରାଷ୍ଟ୍ରମାନଙ୍କରେ ଥିବା ସର୍ବହରାମାନଙ୍କ ଦ୍ୱାରା ଉପସ୍ଥାପିତ କାର୍ଯ୍ୟ ସମୟ ୮ଘଣ୍ଟା ଦାବି ହେଉଛି ସର୍ବପ୍ରଥମ ଦାବି । ଆଠ ଘଣ୍ଟାର ଏହି ଦାବି ହେଉଛି ସମଗ୍ର ସର୍ବହରା ଶ୍ରେଣୀର ଦାବି, କୌଣସି ବ୍ୟକ୍ତି ମାଲିକାନା ନିକଟରେ ନୁହେଁ ବରଂ ସାମାଜିକ ଓ ରାଜନୈତିକ ବ୍ୟବସ୍ଥାର ପ୍ରତିନିଧିତ୍ୱ କରୁଥିବା ସମସ୍ତ ସରକାର ନିକଟରେ, ସମସ୍ତ ପୁଞ୍ଜିପତି ଶ୍ରେଣୀ ନିକଟରେ ନୁହେଁ ବରଂ ସାମାଜିକ ଓ ରାଜନୈତିକ ବ୍ୟବସ୍ଥାର ପ୍ରତିନିଧିତ୍ୱ କରୁଥିବା ସମସ୍ତ ସରକାର ନିକଟରେ, ସମସ୍ତ ପୁଞ୍ଜିପତି ଶ୍ରେଣୀ ନିକଟରେ ଏବଂ ଉତ୍ପାଦନ ସନ୍ଧାନରେ ଲିପ୍ତ ଥିବା ସମସ୍ତ ମାଲିକମାନଙ୍କ ନିକଟରେ ।

ମଇ ଦିବସ ଆନ୍ତର୍ଜାତିକ ସର୍ବହରାମାନଙ୍କର କେନ୍ଦ୍ରବିନ୍ଦୁ । ଆଠଘଣ୍ଟା କାମ ସହିତ ସେମାନଙ୍କର ଅନ୍ୟାନ୍ୟ ଦାବିନେଇ ସେମାନେ ଧର୍ମଘଟ ଶୋଭାଯାତ୍ରା ଓ ବିକ୍ଷୋଭମାନ ଅନୁଷ୍ଠିତ କରିଥିଲେ । ସେମାନେ ଅନ୍ୟ ଯେଉଁ ଦାବି ଉପସ୍ଥାପିତ କରୁଥିଲେ, ସେଥିରେ ଥିଲା ଆନ୍ତର୍ଜାତିକ କ୍ଷେତ୍ରରେ ଶ୍ରମିକ ଶ୍ରେଣୀର ସଂହତି, ସାର୍ବଜନୀନ ଭୋଟ ବ୍ୟବସ୍ଥା, ସାମ୍ରାଜ୍ୟବାଦୀ ଯୁଦ୍ଧ ଓ ଉପନିବେଶ ଶୋଷଣ ବନ୍ଦ କରିବା, ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରିବା, ଶ୍ରମିକ ଶ୍ରେଣୀକୁ ରାଜନୈତିକ ଓ ଅର୍ଥନୈତିକ ସଙ୍ଗଠନ ଗଠନ ପାଇଁ ଅଧିକାର ଦେବା ।

ବିଶ୍ୱବ୍ୟାପି ନବ୍ୟ ଉଦାରବାଦୀ ଜଗତୀକରଣ ବିରୋଧରେ ଶ୍ରମିକ ଶ୍ରେଣୀ ଐକ୍ୟବଦ୍ଧ ଆନ୍ଦୋଳନ ଜାରି ରଖିଛି । ଭାରତରେ ଶ୍ରମିକ ଶ୍ରେଣୀର ଅବସ୍ଥା ଅତ୍ୟନ୍ତ ସଙ୍ଗୀନ । ୨୦୦୯ ମସିହା ମଇ ଦିବସ ପାଳନ କରିବା ବେଳେ ଦେଶରେ ଥିଲା ନିର୍ବାଚନ । ନିର୍ବାଚନର ଉଷ୍ମତା ସତ୍ତ୍ୱେ ଶ୍ରମିକ ଶ୍ରେଣୀ ଦେଶରେ ଦେଖା ଦେଇଥିବା ଆର୍ଥିକ ସମସ୍ୟା ଓ ମାନ୍ଦାବସ୍ଥା ଯୋଗୁଁ ବଜାର

ଅର୍ଥନୀତି ଓ ପୁଞ୍ଜିବାଦର ଶୋଷଣ ବିରୋଧରେ ସ୍ୱର ଉତ୍ତୋଳନ କରି ସାମାଜିକ ମାଲିକାନା, ନିୟନ୍ତ୍ରଣ ଓ ଯୋଜନାରେ ପରିବର୍ତ୍ତନ ପାଇଁ ଦାବି ଦୋହରାଇଥିଲା ।

ନିର୍ବାଚନ ପରେ କେନ୍ଦ୍ରରେ କଂଗ୍ରେସ ନେତୃତ୍ୱରେ ଉପା ସରକାରର ଶାସନ ଆରମ୍ଭ ହେଲା କିନ୍ତୁ ଶ୍ରମଜୀବୀ ଜନଗଣଙ୍କର ସ୍ଥିତିରେ କୌଣସି ପରିବର୍ତ୍ତନ ହୋଇନାହିଁ ।

୨୦୦୯ ମସିହା ଶ୍ରମିକ ଶ୍ରେଣୀ ପାଇଁ ଏକ ଘଟଣାବହୁଳ ସଂଗ୍ରାମ ଓ ସଂଘର୍ଷର ବର୍ଷ ଭାବେ ଯାଇଛି । ୧୮ ଫେବୃଆରୀ ୨୦୦୯ରେ ଶ୍ରମିକ ଶ୍ରେଣୀ ମିଳିତ ଭାବେ ଏକାଠି ହୋଇ ଦିଲ୍ଲୀଠାରେ ସଂସଦ ସମ୍ମୁଖରେ ୧୩ଦଫା ଦାବି ଉପରେ ବିକ୍ଷୋଭ କରିଛନ୍ତି । ଆର୍ଥିକ ମାନ୍ଦାବସ୍ଥାର ଦ୍ୱାହି ଦେଇ ଛଟେଇ, ଲେ-ଅଫ, ମଜୁରି ସଙ୍କୋଚନ, ନିଯୁକ୍ତିର ସୁରକ୍ଷା, ରାଷ୍ଟ୍ରାୟତ୍ତ ବ୍ୟାଙ୍କର ଘରୋଇକରଣ ନକରିବା, ୧୫ତମ ଶ୍ରମ ସମ୍ମିଳନୀ ଅନୁସାରେ ସର୍ବନିମ୍ନ ମଜୁରି ବୃଦ୍ଧି, ଶ୍ରମ ଆଇନକୁ କଡାକଡି ଲାଗୁ କରିବା, ସାର୍ବଜନୀନ କରିବା, କୃଷିକ୍ଷେତ୍ରରେ ଅଧିକ ପୁଞ୍ଜି ବିନିଯୋଗ ଇତ୍ୟାଦି ଦାବିନେଇ ବିକ୍ଷୋଭ କରି ପ୍ରଧାନମନ୍ତ୍ରୀଙ୍କୁ ଦାବିପତ୍ର ଦେଇଥିଲେ । ପୁନଶ୍ଚ ୧୪ ସେପ୍ଟେମ୍ବର ୨୦୦୯ରେ ଏକ ଐତିହାସିକ କନଭେନସନ ଦିଲ୍ଲୀଠାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଭାରତର ସମସ୍ତ କେନ୍ଦ୍ରୀୟ ଟ୍ରେଡ ୟୁନିୟନମାନେ ଯୋଗଦେଇ ଉତ୍କଟ ଦରବୃଦ୍ଧି, ଅତ୍ୟଧିକ ବେକାରି ଓ ନିଯୁକ୍ତି ହ୍ରାସ, ଶ୍ରମ ଆଇନର ଉଲ୍ଲଘଂନ, ଲାଭଦାୟକ ରାଷ୍ଟ୍ରାୟତ୍ତ ଉଦ୍ୟୋଗରୁ ପୁଞ୍ଜି ପ୍ରତ୍ୟାହାର ବିରୋଧରେ ଏବଂ ଅସଂଗଠିତ କ୍ଷେତ୍ର ପାଇଁ ଅଧିକ ଅର୍ଥ ବ୍ୟବସ୍ଥା ଦାବିରେ ଦେଶବ୍ୟାପି ୨୮ ଅକ୍ଟୋବର ୨୦୦୯ରେ ପ୍ରତିବାଦ ଦିବସ, ୧୬ଡିସେମ୍ବର ୨୦୦୯ରେ ରାଜ୍ୟସ୍ତରୀୟ ଧାରଣା ଓ ସାଂସଦ ସମ୍ମୁଖରେ ଧାରଣା ଏବଂ ୫ମାର୍ଚ୍ଚ ୨୦୧୦ରେ ଦେଶବ୍ୟାପୀ ସତ୍ୟାଗ୍ରହ ଓ ଜେଲଭରୋ ଆନ୍ଦୋଳନ ସଙ୍ଗଠିତ କରିଛନ୍ତି । ୨୦୧୨ ଫେବୃଆରୀରେ ମଧ୍ୟ ଅଭୂତପୂର୍ବ ଧର୍ମଘଟ ହୋଇଛି । ଏହି କାର୍ଯ୍ୟକ୍ରମଗୁଡିକ ମାଧ୍ୟମରେ ଶ୍ରମିକ ଶ୍ରେଣୀ କେନ୍ଦ୍ର ସରକାରଙ୍କର ଆର୍ଥିକ, ଶ୍ରମନୀତି ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି। ସେମାନଙ୍କର ଐକ୍ୟବଦ୍ଧ ସଂଗ୍ରାମ ଦ୍ୱାରା କେନ୍ଦ୍ର ସରକାରଙ୍କୁ ଶ୍ରମ ବିରୋଧୀ ଓ ଜନବିରୋଧୀ ନୀତି ବିରୋଧରେ ଚେତାବନୀ ଦେଇଛନ୍ତି।

ଶ୍ରମିକ ଶ୍ରେଣୀର ଏହି ସଂଘର୍ଷ ଜାରି ରହିଛି। କେନ୍ଦ୍ର ସରକାର ନବ୍ୟ ଉଦାରବାଦୀ ଅର୍ଥନୀତିରେ ଏଯାବତ୍ ପରିବର୍ତ୍ତନ ନକରି ପୁଞ୍ଜିପତି ଓ ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କର କ୍ରୀଡନକ ସାଜିଛନ୍ତି । ଏପରିକି ଭାରତର ସର୍ବୋଚ୍ଚ ନ୍ୟାୟପାଳିକା ସୁପ୍ରିମକୋର୍ଟର ଡିଭିଜନ ବେଞ୍ଚ ଉଲ୍ଲେଖ କରି କହିଛନ୍ତି ଯେ ଜଗତୀକରଣ ଓ ଉଦାରୀକରଣର ମନଲୋଭା ମନ୍ତ୍ର ନ୍ୟାୟ ବ୍ୟବସ୍ଥାକୁ ଆକର୍ଷିତ କରୁଛି ଏବଂ ସାମ୍ବିଧାନିକ କୋର୍ଟ ଉଦ୍ୟୋଗିକ ଶ୍ରମିକ ଓ ଅସଂଗଠିତ ଶ୍ରମିକମାନଙ୍କର ଦୁଃଖଦୁର୍ଦ୍ଦଶା ପ୍ରତି ସମ୍ବେଦନଶୀଳ ହେଉନାହାନ୍ତି । ଆମର ସମ୍ବିଧାନ ଶାସକ ଶ୍ରେଣୀ ପାଇଁ ନହୋଇ ହୋଇଛି ଜନଗଣଙ୍କ ପାଇଁ, ରାସ୍ତାରେ ବଞ୍ଚୁଥିବା ମଣିଷମାନଙ୍କ ପାଇଁ । ଜଗତୀକରଣ ଫଳରେ ସମାଜରେ ଖୋଳାଯାଇଥିବା ଗାତକୁ ପୂରଣ କରାଯାଇପାରିବ ଯଦି କୋର୍ଟ ସମାଜର ଦୁର୍ବଳ ଶ୍ରେଣୀର ସ୍ୱାର୍ଥକୁ ସୁରକ୍ଷା କରିବା ପାଇଁ ପ୍ରଚେଷ୍ଟା କରେ।

ଶ୍ରମିକ ଶ୍ରେଣୀର ଏହି ଐକ୍ୟବଦ୍ଧ ସଂଗ୍ରାମରେ ବହୁ ମହିଳା ଶ୍ରମିକ ମଧ୍ୟ ସାମିଲ ହେଉଛନ୍ତି । ସମସ୍ତ କର୍ମଜୀବୀ ମହିଳାମାନଙ୍କୁ ସମାନ କାମ ପାଇଁ ସମାନ ଦରମା ଦେବାର ଦାବି ଦିନକୁ ଦିନ ତୀବ୍ରତର ହେବାରେ ଲାଗିଛି । ଏପର୍ଯ୍ୟନ୍ତ ଅଙ୍ଗନବାଡି, ଆଶା, ପାଚିକାମାନଙ୍କୁ ଶ୍ରମିକ ଭାବେ ଗ୍ରହଣ କରାଯାଇନାହିଁ ଓ ସର୍ବନିମ୍ନ ମଜୁରି ଦିଆଯାଉ ନାହିଁ।

ଦେଶର ବହୁସଂଖ୍ୟକ ମହିଳା ଅନପୌଚାରିକ କ୍ଷେତ୍ରରେ କାର୍ଯ୍ୟ କରିଥିବାରୁ ସେମାନେ ସାମାଜିକ ସୁରକ୍ଷାରୁ ବଞ୍ଚିତ। ମହିଳାମାନଙ୍କୁ କର୍ମକ୍ଷେତ୍ରରେ ନିର୍ଯାତନା ଦିଆଯାଇଛି । କେନ୍ଦ୍ର ସରକାର ଶ୍ରମିକ ଶ୍ରେଣୀର ଟ୍ରେଡ ୟୁନିୟନ ଅଧିକାରୀ ଉପରେ ହସ୍ତକ୍ଷେପ କରୁଛନ୍ତି । ଏହା ବିରୋଧରେ ବ୍ୟାପକ ସଂଗ୍ରାମ ପାଇଁ ଶ୍ରମିକ ଶ୍ରେଣୀ ଚେଷ୍ଟା ଜାରି ରହିଥିବା ବେଳେ କେନ୍ଦ୍ର ସରକାର ଅଧିକ ବିଶେଷ ଅର୍ଥନୈତିକ ଅଞ୍ଚଳ ପ୍ରତିଷ୍ଠା ପାଇଁ ସବୁଜ ସଂକେତ ଦେଇ ଶ୍ରମ ଆଇନର ଉଲ୍ଲଘଂନ କରିବାକୁ ପୁଞ୍ଜିପତିମାନଙ୍କୁ, କର୍ପୋରେଟ ହାଉସମାନଙ୍କୁ ପ୍ରୋତ୍ସାହିତ କରୁଛନ୍ତି। ରାଷ୍ଟ୍ରାୟତ୍ତ ଉଦ୍ୟୋଗରୁ ପୁଞ୍ଜି ପ୍ରତ୍ୟାହାର ପାଇଁ ସରକାର ବଦ୍ଧପରିକର। ଉତ୍କଟ ଦରଦାମ୍ ବୃଦ୍ଧିରେ ଶ୍ରମଜୀବୀଗଣ ଉଚ୍ଛନ୍ନ ହେଉଥିବାବେଳେ କେନ୍ଦ୍ର ସରକାରଙ୍କର ଶ୍ରମଜୀବୀ ଜନଗଣଙ୍କ ଉପରେ ଯେଉଁ ଜନବିରୋଧୀ ନୀତି ଲାଗୁ କରିଛନ୍ତି, ତାହା ବିରୋଧରେ ଶ୍ରମିକ ଶ୍ରେଣୀର ମିଳିତ ସଂଗ୍ରାମ ହିଁ ଏକମାତ୍ର ଅସ୍ତ୍ର ।

ଭାରତରେ ସମସ୍ତ କେନ୍ଦ୍ରୀୟ ଟ୍ରେଡ୍‌ୟୁନିୟନମାନଙ୍କର ଐକ୍ୟର ପ୍ରତିଷ୍ଠା ହୋଇଛି ଏବଂ ସେମାନେ ଐକ୍ୟବଦ୍ଧ ଆନ୍ଦୋଳନ ଜାରି ରଖିଛନ୍ତି । ପୁଞ୍ଜିବାଦୀ ଜଗତୀକରଣ ଅର୍ଥନୀତି ବିଶ୍ୱର ସମସ୍ତ ଶ୍ରମିକଶ୍ରେଣୀକୁ ଏକଜୁଟ କରିଛି ଏବଂ ବିଶ୍ୱବ୍ୟାପି ପୁଞ୍ଜିବାଦୀ ବ୍ୟବସ୍ଥା ଓ ଶାସନ ବିରୋଧରେ ଶ୍ରମିକ ଶ୍ରେଣୀର ସଂଗ୍ରାମ ଶ୍ରମିକଶ୍ରେଣୀ ଆଗରେ ମଇ ଦିବସର ଐତିହ୍ୟ ଓ ସଂଗ୍ରାମକୁ ମନେ ପକାଇ ଦେଇଛି ।

---

ଗଜପତି ନଗର
ଭୁବନେଶ୍ୱର- ୭୫୧୦୦୫

# ମହାମନୀଷୀ ମାର୍କସ୍ ଓ ଗାନ୍ଧିଜୀ ଏବଂ ପାଇଟିଆଳ ଶ୍ରମଜୀବୀ

ଜେନାମଣୀ ଲକ୍ଷ୍ମୀକାନ୍ତ

ଏକୁଆରେ ବଳୀ । ମହାତ୍ମାଗାନ୍ଧୀ ଆଉ କାର୍ଲ ମାର୍କ୍ସ ପ୍ରଥିତଯଶା, ଯୁଗାନ୍ତକାରୀ, ଦୁଇ ମହାନ୍ ମାର୍ଗଦଶୀ ମନିଷୀ । ବୟସାନୁକ୍ରମରେ କାର୍ଲ ମାର୍କସ୍ ଥିଲେ ଜ୍ୟେଷ୍ଠ ଓ ବରିଷ୍ଠା ବହୁମୁଖୀ ପ୍ରତିଭାଶାଳୀ ଓ ଅସାଧାରଣ ପ୍ରଜ୍ଞାଯୁକ୍ତ କାର୍ଲ ହେନେରିକ ମାର୍କସ୍ ଏକାଧାରରେ ଥିଲେ ଜର୍ମାନ ବଂଶୋଦ୍ଭବ ଦାର୍ଶନିକ, ରାଜନୈତିକ, ଅର୍ଥନୀତିଜ୍ଞ, ସମାଜବିଜ୍ଞାନୀ, ମାନବବାଦୀ, ରାଷ୍ଟ୍ରନୀତି ତତ୍ତ୍ୱବିତ୍, କ୍ରାନ୍ତିକାରୀ ଏବଂ ସାମ୍ୟବାଦର ପ୍ରତିଷ୍ଠାତା । ୧୮୧୮ ମସିହା ମଇ ୫ତାରିଖ ଦିନ ପ୍ରୁସୀୟା ପ୍ରଦେଶର ଟ୍ରାୟରରେ ଜନ୍ମଗ୍ରହଣ କରି ସେ ୬୫ବର୍ଷର ବ୍ୟସ୍ତବହୁଳ ଜୀବନ ଚର୍ଚ୍ଚା ଉତ୍ତାରୁ ଲଣ୍ଡନ ଉପକଣ୍ଠ କେଣ୍ଟିସ ସହରର ୯ ଗ୍ରାଫ୍ଟନ୍ ଟେରାସରେ ବ୍ରୋଙ୍କାଇଟ୍ସ-ପ୍ଲେରୁସୀ ପ୍ରାବଲ୍ୟ ରୋଗ ହେତୁ ୧୮୮୩ ମାର୍ଚ୍ଚ ୧୭ ତାରିଖ ଦିନ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ। ମୃତ୍ୟୁର ୨ବର୍ଷ ପୂର୍ବରୁ ମାର୍କ୍ସ ପ୍ରିୟତମା ପତ୍ନୀ ଜେନୀକୁ ୧୮୮୧ ଡିସେମ୍ବରରେ ହରାଇ ବସିଥିଲେ। ମୃତ୍ୟୁ ପୂର୍ବରୁ ତାଙ୍କର ଚାରି ସନ୍ତାନ ସନ୍ତତୀ- ଯଥା (୧) ଏଡଗାର (୨) ହେନେରୀ ଏଡୱାଡ (୩) ଫ୍ରାନଜିସ୍କା (୪) ଜୁଲିୟା ଏଲିନର ଉପସ୍ଥିତ ଥିଲେ। ରାଜକୀୟ ସମ୍ମାନ ଓ ଅଭୁତପୂର୍ବ ଶୋକ ସମାରୋହ ମଧ୍ୟରେ ଲଣ୍ଡନର ପ୍ରସିଦ୍ଧ ହାଇଗେଟ୍-କବରଖାନାଠାରେ ମାର୍କ୍ସଙ୍କର ପାର୍ଥିବ ଶରୀରକୁ କବର ଦିଆଗଲା ୧୮୮୩ ମାର୍ଚ୍ଚ ୧୭ ତାରିଖ ସୂର୍ଯ୍ୟାସ୍ତ ସମୟରେ । ବିଶ୍ୱ ବିଶୃତ ମାର୍ଗଦର୍ଶୀ ଏହି ମହାମନିଷୀ ଏବଂ ମେହନତୀ ଜନତାର ହିତୈଷୀଙ୍କ ସମାଧିଶୀଳା ଉପରେ ସ୍ୱର୍ଣ୍ଣାକ୍ଷରରେ ବିଶ୍ୱ ବିଶୃତ ସେ ଉଦାତ୍ତ ଆହ୍ୱାନ ଖୋଦିତ ହୋଇଛି ଇଂରାଜୀରେ । ତାହା ହେଉଛି ଏହିଭଳି: ' Workers of all lands Unite' । ବିଶ୍ୱର ସମସ୍ତ ମେହନତୀ ମଣିଷ ଏକତ୍ରୀଭୂତ ହୁଅ । ତାହା ତଳକୁ ସାମ୍ୟବାଦୀ ଇସ୍ତାହାରର ବିଶେଷ ପଂକ୍ତି ସମେତ ଫୟ୍ୟରବାଚ୍ ମହାନିବନ୍ଧର ଏକାଦଶ ପରିଚ୍ଛେଦରେ ଏଞ୍ଜେଲଙ୍କ ବୟାନ/ପାଠାନ୍ତରର କିୟଦଂଶ ମଧ୍ୟ ଖୋଦିତ । The philosophers have only interpreted the world on various ways- The point however is to change it. ଗ୍ରେଟ୍ ବ୍ରିଟେନ୍‌ର କମ୍ୟୁନିଷ୍ଟ ପାର୍ଟି କର୍ତ୍ତୃକ ଓ ନିର୍ମିତ ଏହି ସ୍ମୃତିସ୍ତମ୍ଭ ପ୍ରକାଶ କରଣ ଶୋକ ସମାରୋହରେ ସାଥୀ ଓ ସତୀର୍ଥ ଫ୍ରେଡେରିକ୍ ଏଂଜେଲଙ୍କ ଅଶ୍ରୁଳ ଶୋକାଞ୍ଜଳି ଥିଲା।

ବିଶ୍ୱର ମେହନତୀ ଜନତାର ମାର୍ଗଦର୍ଶୀ ମନିଷୀ ହିତୈଷୀ, ସେନାନାୟକ, ସାଥୀ, ସାରଥୀ- ଏହି ପ୍ରଥିତଯଶା କ୍ରାନ୍ତିଦର୍ଶୀ ଚିନ୍ତା ନାୟକଙ୍କ ଦୁଇ କାଳଜୟୀ ଅମରକୃତୀ (୧) Das capital (1872) ଏବଂ (୨) Communist manifesto (1848) ଲୋକାର୍ପିତ ହେବା ଉତ୍ତାରୁ, ତାହା ବସ୍ତୁତଃ ଋଷ ଦେଶରେ ଜାର ସମ୍ରାଟକୁ କ୍ଷମତାଚ୍ୟୁତ କରି କମ୍ୟୁନିଷ୍ଟ ଶାସନର ପ୍ରାଣ ପ୍ରତିଷ୍ଠା କରିଥିଲା। ଫଳରେ ଏକ ନୂତନ ସାମ୍ୟବାଦୀ ରାଜନୈତିକ ଚେତନାର ଉତ୍ତାଳ-ତରଙ୍ଗାଲୋଡନ ପ୍ରକ୍ରିୟାରେ ୟୁରୋପ ଆଫ୍ରିକା ଏବଂ ଏସିଆ ମହାଦେଶରେ ଅଭୁତପୂର୍ବ କମ୍ପନ ସ୍ପନ୍ଦନ ସୃଷ୍ଟି କରିଥିଲା। ଫଳରେ ସମାଜବାଦୀ ବାସ୍ତବବାଦ ସେଇ ସାମ୍ୟବାଦୀ ରାଜନୈତିକ ଚେତନାର ବିମୂର୍ତ୍ତ ସାଂସ୍କୃତିକ ରୂପରେଖ କହିଲେ ଅତ୍ୟୁକ୍ତି ହେବନି । ମାର୍କ୍ସ ତାଙ୍କ ଦିଶା-ଦର୍ଶନରେ ଏହା ସ୍ପଷ୍ଟ କରି ବସିଥିଲେ: ମଣିଷ ସଭ୍ୟତାର ଇତିହାସ ହେଉଛି ଶ୍ରେଣୀ ସଂଘର୍ଷର ଇତିହାସ । ଆଦିମ ଶ୍ରେଣୀହୀନ ମଣିଷ ସମାଜ କିପରି ଭୂମୀ ଦାସ ସମାଜ, ସାମନ୍ତବାଦୀ ସମାଜ, ପୁଞ୍ଜିବାଦୀ ସମାଜର ସ୍ତର ଦେଇ ସାଂପ୍ରତିକ ସମାଜବାଦୀ ସମାଜର ସମୀପବର୍ତ୍ତୀ ହୋଇଛି, ତା'ର ମୁଖା ଖୋଲି ମାର୍କ୍ସ ତାଙ୍କର ବହୁ ପ୍ରଖ୍ୟାତ ସାମ୍ୟବାଦୀ ରାଜନୈତିକ ଦିଶାଦର୍ଶନରେ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଉତ୍ତାରୁ ଏହା

ପ୍ରାଞ୍ଜଳ ଭାବେ ଦର୍ଶାଇଥିଲେ ଯେ: ସାଧାରଣ ମେହନତୀ ମଣିଷର ଶ୍ରମ ଓ ସଂଘର୍ଷ ଫଳରେ ହିଁ ସଭ୍ୟତାର କ୍ରମବିକାଶ ଘଟିଛି । ଉତ୍ପାଦନ ପ୍ରଣାଳୀ ଓ ବଣ୍ଟନ ବ୍ୟବସ୍ଥାର ପରିବର୍ତ୍ତନ ସହିତ ସାମାଜିକ ଅବସ୍ଥାର ପରିବର୍ତ୍ତନ ଘଟେ । ତାଙ୍କର ଦୃଢୋକ୍ତି ଥିଲା: ମଣିଷର ଶ୍ରମ ହିଁ ଯେ ସଭ୍ୟତାର ପରମ ସୌନ୍ଦର୍ଯ୍ୟ ସେ ଦୃଶ୍ୟ ଖାସ୍ ଧରାପଡିଲା ସମାଜବାଦୀ ବାସ୍ତବବାଦୀଙ୍କ ଅନିସନ୍ଧିସ୍ନୁଙ୍କ ଚକ୍ଷୁରେ । ଜୀବନରେ ଫଟୋ ଗ୍ରାଫି ବାସ୍ତବତା ନୁହେଁ, ମଣିଷର ଶ୍ରମ ଓ ସଂଘର୍ଷ ଭିତରେ ଯେଉଁ ସୌନ୍ଦର୍ଯ୍ୟ ଓ ଅପାରଶକ୍ତି ରହିଛି, ତାକୁ ସମାଜବାଦୀ ଆଲୋକରେ ଉଦ୍‌ଭାସିତ କରିବା ପାଇଁ ମାର୍କ୍ସଙ୍କର ଆହ୍ୱାନ ଥିଲା ଯେଉଁଭଳି ଉଦାତ୍ତ, ସେଉଁଭଳି ଅନନ୍ୟ । ତାଙ୍କର ଦୃଢ ଆତ୍ମ ପ୍ରତ୍ୟୟ ଥିଲା ବିଶ୍ୱର ଅଗଣିତ ନିଷ୍ପେସିତ-ମେହନତୀ ଜନତା ଯେତେବେଳେ ଏକୀଭୂତ ହୋଇ ଜାଗି ଉଠିବେ ଏବଂ ପ୍ରତିବାଦ/ପ୍ରତିରୋଧକ ସ୍ୱର ଉତ୍ତୋଳନ ସହ ବିଦ୍ରୋହରେ ଝାସ ଦେବେ, ସେମାନଙ୍କର ଯୁଗାନ୍ତକାରୀ ସଂଘବଦ୍ଧ ଶ୍ରେଣୀ ସଂଗ୍ରାମ ଓ ଜାଗରଣ ଆଗରେ ପୁଞ୍ଜିବାଦୀ-ସମାଜବାଦୀ, ସମାଜ (ଔଦୋଗିକ ଶୋଷଣ) ବ୍ୟବସ୍ଥା ଛାଏଁ ତାସ୍ ଘର ଭଳି ଭୁଷୁଡି ପଡ଼ିବ ଏବଂ ଭସ୍ମସ୍ତୁପ ଉପରେ ଉଠି ଖାଡାହେବ ଏକ ଶ୍ରେଣୀହୀନ ଶୋଷଣହୀନ ସମାଜବାଦୀ ସମାଜ । ଏକଥା ଭୁଲିଯାଅନି ଯେ: ଦ୍ୱନ୍ଦ୍ୱ ଓ ସଂଘର୍ଷ ମଧ୍ୟରେ ଇତିହାସ ତା'ର ଗତିପଥ ପରିବର୍ତ୍ତନ କରେ ଏବଂ ପ୍ରାଚୀନ ଓ ନୂତନର ଦ୍ୱନ୍ଦ୍ୱ ଫଳରେ ନୂତନର ବିଜୟ ବାସ୍ତବାୟିତ ହୁଏ । ସମୟ ଓ ଇତିହାସ ତା'ର ମୁକସାକ୍ଷୀ ।

ବିଶ୍ୱବିଶୃତ ଅହିଂସା ଓ ଶାନ୍ତିର ପରମ ପୂଜାରୀ, ମାନବବାଦୀ ମହାମନିଷୀ, ସଂକ୍ରାନ୍ତି ପୁରୁଷ, ରାଷ୍ଟ୍ରପୁରୁଷ, ମହାନ ଚିନ୍ତାନାୟକ, ଦାର୍ଶନିକ, ପରୋପକାରକ, ରାଷ୍ଟ୍ରନୀତିଜ୍ଞ, ସାରସ୍ୱତପୁରୁଷ, ଭାରତୀୟ ମୁକ୍ତି ସଂଗ୍ରାମର କର୍ଣ୍ଣଧାର, ଶତାବ୍ଦୀର ସର୍ବାଧିକ ଲୋକପ୍ରିୟ ଓ ବିଶ୍ୱବିଶୃତ ମହାନାୟକ, ମୋହନ ଦାସ କରମଚାନ୍ଦ ଗାନ୍ଧୀ (ଓରଫ ମହାତ୍ମା ଗାନ୍ଧୀ) ୧୮୬୯ ମସିହା ଅକ୍ଟୋବର ୨ ତାରିଖରେ ଗୁଜରାଟ୍ (ସ୍ୱରାଷ୍ଟ୍ର) ପ୍ରଦେଶର ପୋର ବନ୍ଦରରେ ଜନ୍ମଲାଭ କରିଥିଲେ ଏବଂ ତାଙ୍କର ମହାନ ଜୀବନଚର୍ଯ୍ୟା ୭୯ ବର୍ଷରେ ସୀମୀତ ଥିଲା । ସତ୍ୟ ଓ ଅହିଂସାର ଶାସନାଧୀନ ପରାଧୀନ-ଭାରତର ମୁକ୍ତି ସଂଗ୍ରାମର ସେ ଥିଲେ ଅନନ୍ୟ କର୍ଣ୍ଣଧାର । ତାଙ୍କର ତ୍ୟାଗଦୀପ୍ତ ସଂଗ୍ରାମ ଓ ସମର୍ଥ ନେତୃତ୍ୱକୁ ପୁଞ୍ଜିକରି ପରିଶେଷରେ ୧୯୪୭ ମସିହା ଅଗଷ୍ଟ ୧୫ରେ ଭାରତ ସ୍ୱାଧୀନ ହେଲା ପରାଧୀନତାର ଶୃଙ୍ଖଳ ଛିନ୍ନ କରି । ଏହାର ଠିକ୍ ମାତ୍ର ସାଢେ ପାଞ୍ଚମାସ ପରେ ୧୯୪୮ ମସିହା ଜାନୁୟାରୀ ୩୦ ତାରିଖ ଅପରାହ୍ନରେ ଦିଲ୍ଲୀସ୍ଥିତ 'ବିରଳା ଭବନ' ପ୍ରାର୍ଥନା ସଭାକୁ ଚାଲି ଚାଲି ଆସିବା ବାଟରେ ଜଣେ ଧର୍ମାନ୍ଧ ଆତତାୟୀ (ନାଥୁରାମ ଗଡ୍‌ସେ)ର ତିନୋଟି ନିର୍ମମ ଗୁଳିଚୋଟରେ ରାଷ୍ଟ୍ରପିତା ମହାତ୍ମା ଗାନ୍ଧୀ ଶେଷ-ନିଶ୍ୱାସ ତ୍ୟାଗ ବେଳେ 'ହେ ରାମ' ଉଚ୍ଚାରଣ ସହ ଟଳି ପଡିଲେ । ଶାନ୍ତି ଓ ଅହିଂସା ପ୍ରେମୀ, ମାନବାନୁରାଗୀ ଏହି ତ୍ୟାଗଦୀପ୍ତ ଓ ବିଶ୍ୱବିଶୃତ ମହାନ ସର୍ପିତ ଜୀବନ ବହ୍ନିବିଲୀନ ହେବା ଉତ୍ତାରୁ ବିଶ୍ୱବ୍ୟାପୀ ଅଭୁତପୂର୍ବ ଶୋକ ପ୍ରକାଶ ଏବଂ ଅଶ୍ରୁପୂର୍ବକ ବିଶାଳ ଶୋକାଭିଭୂତ ଗାନ୍ଧୀ ଅନୁରାଗୀଙ୍କ ସମାରୋହ ମଧ୍ୟରେ ପରିଶେଷରେ ଦିଲ୍ଲୀସ୍ଥିତ 'ରାଜଘାଟ'ଠାରେ ବାପୁଙ୍କୁ ସମାଧିସ୍ଥ କରାଗଲା । ତାହା ଏବେ ବିଶ୍ୱର ଏକ ଅନନ୍ୟ ସ୍ମୃତି ତୀର୍ଥରେ ରୂପାନ୍ତରିତ ।

ନିଜର ଜଖମ କାନ୍ଧରେ ବିଶ୍ୱମାନବିକତାର ଗୁରୁ ବୋଝ ବୋହି ବୋହି, ଆତ୍ମବଳି ଦେଇଥିବା ଗାନ୍ଧୀଥିଲେ ମାର୍ଗଦର୍ଶୀ ମନିଷୀ । ମାର୍କସଙ୍କ ଭଳି ବିଶ୍ୱର ବିଶୃତ ମସିହା । ସେ ଥିଲେ ତିମିରିତ ବିଶ୍ୱ ପାଇଁ ଦୀପ୍ତି ଓ ଦ୍ୟୁତିମୟ ଅନିର୍ବାଣ ଆଲୋକବର୍ତ୍ତୀକା । ଗାନ୍ଧୀଥିଲେ ରାଷ୍ଟ୍ରପିତା ଓ ଭାରତ ଆତ୍ମା । ଆତ୍ମାବିନା ନିର୍ବେଦ ଜୀବନଯାପନ ଏକ କାଠିକର ବ୍ୟାପାର । ବହୁମୁଖୀ ପ୍ରଚଣ୍ଡ ପ୍ରତିଭାଧାରୀ ଏବଂ ଅସାଧାରଣ ଦିବ୍ୟ ଦର୍ଶନରେ ଅନୁବଂଧିତ ସେଥିଲେ ମାନବୀୟ ସୁଖଶାନ୍ତିର ବଳିଷ୍ଠ ପ୍ରବକ୍ତା । ଅର୍ଥନୈତିକ ବିକାଶ ପରିପ୍ରେକ୍ଷୀରେ ସେ ଥିଲେ ସ୍ୱଦେଶୀ ପ୍ରତ୍ୟୟରେ ପ୍ରତ୍ୟର୍ପିତ । ଗାଁକୁ ଫେରିଚାଲ ଥିଲା ତାଙ୍କର ଉଦାତ୍ତ ଆହ୍ୱାନ । କୁଟି ଖାଅ ଓ କାଟି ପିନ୍ଧ ଥିଲା ତାଙ୍କର ସ୍ୱାବଲମ୍ବନୀ ଆୟୁଧ । ମୌଳିକ ଶିକ୍ଷାବିତ୍, ବ୍ୟକ୍ତିର ସର୍ବାଙ୍ଗୀନ ବିକାଶ ଓ ଚରିତ୍ରଧର୍ମୀ ଶିକ୍ଷାର ସିଏ ଥିଲେ ପଥପ୍ରଦର୍ଶକ । ଅହିଂସା ପରମ ଧର୍ମର ସେ ଥିଲେ ବିଶ୍ୱବିଶୃତ ବୈତାଳିକ । ସର୍ବଧର୍ମର ସମନ୍ୱୟ ଏବଂ ସୌହାର୍ଦ୍ଦ୍ୟ ଥିଲା ତାଙ୍କର ଗୁରୁମନ୍ତ୍ର । ମୂଲ୍ୟବୋଧଭିତ୍ତିକ ରାଜନୀତି ଓ ଜନଜୀବନ ଥିଲା ତାଙ୍କର ବାର୍ତ୍ତା ଓ ବ୍ରତବନ୍ତ । ସେ ଥିଲେ ମହାମନିଷୀ, ଯୁଗାନ୍ତକାରୀ, ଦିବ୍ୟପୁରୁଷ । ନିଜର ଦୁର୍ବଳତା ଉପରେ ତାଙ୍କର ନିୟନ୍ତ୍ରଣ ଅଙ୍କୁଶ ଥିଲା ସୁଦୃଢ଼୍ୟ ଓ ଅତୁଲ୍ୟ । ଆତ୍ମା ଶୁଦ୍ଧି ପାଇଁ ଓ ଶକ୍ତ ସଞ୍ଚୟନାର୍ଥେ, ପ୍ରାଣାୟମ ଯୋଗାସନ ପ୍ରାର୍ଥନା, ଧ୍ୟାନ ଓ ସର୍ତ୍ତ ଯଜ୍ଞାଦିରେ ସେ ନିରନ୍ତରବ୍ରତୀ ଥିଲେ । ଭାବାନୁବନ୍ଧିତ ହିନ୍ଦୁ ଥିଲେ । ଆଚରଣରେ କିନ୍ତୁ ସେ ଏକନିଷ୍ଠ ବୈଷ୍ଣବ ଥିଲେ ।

ମହାମନିଷୀ ବାପୁ ରଚନାତ୍ମକ କ୍ରାନ୍ତିର ଥିଲେ କୃତବିଦ୍ୟ ପ୍ରବର୍ତ୍ତକ । ବର୍ଗହୀନ ସମାଜ ରଚନାର୍ଥେ ତାଙ୍କର ଅଭିଯୋଜନା ଥିଲା ସୁଚିନ୍ତିତ ଓ ସୁଦୂରପ୍ରସାରୀ । ଭାରତୀୟ ସଂସ୍କୃତିର ସମନ୍ୱୟ ଶକ୍ତିର ସଦୁପଯୋଗ ଥିଲା ତାଙ୍କ କ୍ରାନ୍ତିକାରୀ ଚେତନାର ଉଦ୍ଦେଶ୍ୟ । ବିଭିନ୍ନତାରେ ଏକତା, ସର୍ବହରାର ଅନ୍ତୋଦୟ, ଶୋଷଣ ବିହୀନ ସମାଜ ପ୍ରତିଷ୍ଠା, ଦଳିତ ଓ ପତିତୋଦ୍ଧାରଣର ସିଏ ଥିଲେ କ୍ରାନ୍ତିଦର୍ଶୀ ଭବିଷ୍ୟଦ୍ରଷ୍ଟା ଏବଂ ମହାମାଂତ୍ରିକ ବର୍ତ୍ତମାନ ଓ ଅବର୍ତ୍ତମାନ, ସବୁ ସମୟର । ଦକ୍ଷିଣ ଆଫ୍ରିକାରେ ସୁଦୀର୍ଘ ୨୧ବର୍ଷ ପ୍ରବାସ ଜୀବନ ଅତିବାହନ କାଳରେ ମେହନତୀ ମଣିଷର ସ୍ୱାଧୀକାର ସୁରକ୍ଷା ଓ କଲ୍ୟାଣ ସାଧନରେ ଉତ୍ସର୍ଗୀକୃତ ଥିଲା ତାଙ୍କ ସାଂଗଠନିକ ନେତୃତ୍ୱ । ୧୯୧୫ରେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ ଉତ୍ତାରୁ ଅହମ୍ମଦାବାଦରେ ସାବରମତୀ ଆଶ୍ରମରେ ଡେରା ପକାଇବା ପରଠାରୁ ବ୍ରହ୍ମବିଲୀନ ହେବା ଯାଏ ଶ୍ରମ ଆନ୍ଦୋଳନ ଓ ସଂଗଠନ ସହ ପ୍ରତ୍ୟକ୍ଷଭାବେ ଅନୁବଂଧିତ ଥିଲେ ଗାନ୍ଧିଜୀ । ସେ ମାର୍କ୍ସୀୟ ଶ୍ରେଣୀର ଥିଲେ ପରିପନ୍ଥୀ । ତାଙ୍କର ସ୍ୱଷ୍ଟୋକ୍ତି ଥିଲା ଶ୍ରମ ପଣ୍ୟ ନୁହେଁ କିମ୍ବା ଶ୍ରମିକ ପୁଞ୍ଜିର ଶ୍ରେଣୀ ଶତ୍ରୁ ନୁହେଁ । ଏକ ଜନକଲ୍ୟାଣକାମୀ ସମାଜବାଦୀ ପ୍ରଜାଙ୍କପଥେ ଶିଳ୍ପାୟନ ପ୍ରକ୍ରିୟାସହ ପରିଚାଳନା କର୍ତ୍ତୃପକ୍ଷଙ୍କ ସହ ଶ୍ରମଶକ୍ତି, ଅଗଣିତ ଖାଉଟି ଏବଂ ବାରାନ୍ତରରେ ରାଷ୍ଟ୍ରିୟ ଅର୍ଥନୈତିକ ବିକାଶ ତଥା ସମାଜକଲ୍ୟାଣ ଭଳି ଜ୍ୱଳନ୍ତ ପ୍ରସଙ୍ଗ ଜଡିତ । ପାରସ୍ପରିକ ମହୋଦ୍ୟମ, ସହଯୋଗ ସୌହାର୍ଦ୍ଦ୍ୟ ମାଧ୍ୟମରେ ହିଁ ଉତ୍ପାଦନର ଗୁଣାତ୍ମକ ଓ ପରିମାଣାତ୍ମକ ଅଭିବୃଦ୍ଧି ଅବଶମ୍ଭାବି । ରୁଟି ଓ ଲହୁଣୀର ଆକୃତି ଓ ପରିମାଣ ବଡ ଓ ଅଧିକ ହେଲେ, ଉଭୟ ଅଂଶୀଦାରଙ୍କ ଭାଗ ପୂର୍ବାପେକ୍ଷା ଅଧିକ ହେବ ନିଶ୍ଚୟ । ଏହି ପ୍ରକ୍ରିୟା ଉପରେ ଉଭୟଙ୍କର ସ୍ୱାର୍ଥ ସନ୍ନିବେଶିତ । ଏଣୁ ମୁକାବିଲା, ଝଗଡିବା ଅଥବା ଶ୍ରେଣୀବୈର ଭାବକୁ ଜାବୁଡି ଧରିବାରେ ଅତୋ ନଷ୍ଟ ତତୋ ନଷ୍ଟ ଶ୍ରମିକକୁ ପ୍ରଚୁରଭାବେ ପ୍ରଭାବିତ କରୁଥିବା ମଜୁରି ଓ ଲାଭାଂଶ ପରିପ୍ରେକ୍ଷୀରେ, ବାପୁଙ୍କର ଦିଶା ଓ ମାନକ ଯେଭଳି ନିରପେକ୍ଷ ଓ ଶ୍ରମିକ ହିତକାରୀ, ସେହିଭଳି ଆଶାସଂଚାର ଥିଲା । ସେ ଥିଲେ ଭାଗୁଆଳୀ ତତ୍ତ୍ୱାବଧାରକ ତତ୍ତ୍ୱର ସ୍ଥପତି ଓ ବଳିଷ୍ଠ ପ୍ରବକ୍ତା । (ଦ୍ରଷ୍ଟବ୍ୟ: ହରିଜନ ପତ୍ରିକାର ଦୈନିକ ୨୩.୨.୧୯୪୭, ୪.୫.୧୯୪୭ ଏବଂ ୧.୬.୧୯୪୭ ସଂସ୍କରଣର ଆଲେଖ୍ୟ) ସର୍ବୋପରି କ୍ରାନ୍ତିକାରୀ ମାର୍କସଙ୍କ ଭଳି ଗାନ୍ଧିଜୀ ସ୍ୱକୀୟ ଦର୍ଶନବୋଧ ଘେନି ମେହନତୀ ମଣିଷର ଥିଲେ ବିବେକରକ୍ଷୀ, ଦରଦୀବନ୍ଧୁ, ସାଥୀ, ସମର୍ଥକ ଓ ସେନାପତି । ସାବରମତି ଆଶ୍ରମରେ ପ୍ରବେଶ ଉତ୍ତାରୁ ଟେକ୍ସଟାଇଲ୍ ମଜଦୁରଙ୍କୁ ଶୋଷଣ ଓ ନିର୍ଯ୍ୟାତନାର ନିରାକରଣ ପାଇଁ ସିଏ ସଂଗଠନ ଓ ସାମୂହିକ ସହବନ୍ଧ ଉପରେ ପ୍ରାଧାନ୍ୟ ଦେବା ସହ ଅହିଂସା ସଂଗ୍ରାମ (ଶ୍ରମ ଆନ୍ଦୋଳନ)ରେ ଅବତୀର୍ଣ୍ଣ ହୋଇଥିଲେ । ସେତେବେଳେ ସାବରମତୀ ଆଶ୍ରମ ଥିଲା– ସଂଗ୍ରାମ ଓ ସତ୍ୟାଗ୍ରହୀ ଶ୍ରମିକ ଆନ୍ଦୋଳନର ନିୟନ୍ତ୍ରଣ କକ୍ଷ ଏବଂ ବତୀଘର । ସବୁକୁ ବଖାଣୀ ବସିଲେ ପୋଥିଏ ହେବ । ଛୋଟ ଏକ ଦୃଷ୍ଟାନ୍ତର ଅବତାରଣ କେବଳ ଏଠି । ବଳ କଷାକଷି ପକ୍ରିୟାରେ ଗାନ୍ଧିଜୀଙ୍କ ଅନଶନର ୩ୟ ଦିନରେ, ପରିଶେଷରେ ଖରା–ଛାଇରେ ଲୁଚକାଳି ଖେଳୁଥିବା ଲାଭଖୋର ମିଲ ମାଲିକମାନେ ତାଙ୍କର ଦାବି ମାନିନେଲେ । ଟେକ୍ସଟାଇଲ ଲେବର ଆସୋସିଏସନ୍‌ର ଜନ୍ମ ଓ ପ୍ରତିଷ୍ଠା ଖୁବ୍ ପ୍ରଭାବୀ ଥିଲା । ଏହି ସଂଘର୍ଷ ତା'ର ମୁଖ୍ୟସ୍ରୋତକୁ ସର୍ଦ୍ଦାର ପଟେଲ, ଶଙ୍କର ଲାଲ ବେଙ୍କର ଏବଂ ଅନୁସୂୟା ଦେବ–ସରାବାଇ ପ୍ରଭୃତିଙ୍କୁ ଆକର୍ଷିତ କରି ମାର୍ଗଦଶୀ ବାପୁଙ୍କ ନିକଟବର୍ତ୍ତୀ କରାଇଥିଲେ । ସମସ୍ତେ କହିଲେ ''ନାଇକ ଜାଣୀ: ପାଇକ ପଣିଆ'' । ସୁ ଶ୍ରମ ସଂଗଠନର ନେତା ଯେମିତି: ସଙ୍ଗଠନ ରୂପାୟିତ ହେବ ସେମିତି । ଏଥିଅନ୍ତେ ଖେଦ– ସତ୍ୟାଗ୍ରହ ବା (ବିକ୍ଷୋଭ ସତ୍ୟାଗ୍ରହ) ପରିକ୍ଷଣର ଶୁଭାରମ୍ଭ ହେଲା । ଏହାକୁ ସର୍ବଭାରତୀୟ/ଜାତୀୟ ସ୍ତରକୁ ସମ୍ପ୍ରସାରିତ କରାହୁଅନ୍ତେ ଇଂରେଜ ସରକାର ଚଞ୍ଚକତାର ସହ ସ୍ୱାଧୀନତା ମୂଳଛେଦନ ପୂର୍ବରୁ ରୋଲାଟ୍ ଆକ୍ଟ ବ୍ରିଟିଶ୍ ପାର୍ଲ୍ୟାମେଣ୍ଟରେ ଭାରତରେ ତାହା ସତ୍ୱର ଭାବେ ଲାଗୁ କରାଇ ବସିଲେ ।

ନକହିଲେ ନଚଳେ । ମାଛ ସମୁଦ୍ର ତଟବର୍ତ୍ତୀ ଅଞ୍ଚଳରେ ଥାଏ ସମୁଦ୍ର ମନ୍ଥନ ଦୂରର କଥା ସମୁଦ୍ରର ଗଭୀରତା ଓ ବିସ୍ତୃତ କେତେ ତାକୁ ଭଲଭାବେ ଜଣାନଥାଏ । ଯେମିତି ପକ୍ଷୀଟିଏ ଏ ମୁକ୍ତାକାଶରେ ବିଚରଣ କରେ, ଅଥଚ ଆକାଶର ଉଚ୍ଚତା ଓ ବ୍ୟାପ୍ତି କେତେ ତାହା ତା'ର ଗୋଚରରେ ନଥାଏ । ମାର୍ଗଦଶୀ ଦୁଇ ମହାମନିଷୀଙ୍କ ବିଶାଳ ଦିଶା–ଦର୍ଶନର ମୂଲ୍ୟାୟନ କେବଳ ଏକ କ୍ଷୁଦ୍ର ପ୍ରଦୀପର ନୈବେଦ୍ୟରେ ଆଦିତ୍ୟ ହୃଦୟଙ୍କୁ ସଂବୋଧନ ସ୍ୱରୂପ । ପ୍ରକୃତ ପକ୍ଷେ ଗାନ୍ଧୀ ଓ ମାର୍କ୍ସ ଦୁହିଁଙ୍କ ମଧ୍ୟରେ ସବୁଠାରୁ ବଡ ଯେଉଁ ସାଦୃଶ୍ୟ ପରିଲକ୍ଷିତ, ତାହା ହେଉଛି ଅଗଣିତ ସର୍ବହରା, ଦଳିତ, ଶୋଷିତ, ସାଧନ ବିହୀନ, ଜ୍ଞାନହୀନ, ବୁଭୁକ୍ଷୁ ମଣିଷଙ୍କ ପ୍ରତି ଅପାର କରୁଣା ଓ ସେମାନଙ୍କର ଉଦ୍ଧାରଣ– ଅନ୍ତୋଦୟ ଓ ମୁକ୍ତି ପାଇଁ ଦୁହିଁଙ୍କ ସାଲିସ ବିହୀନ ଅଭିଯାନ ଓ ନିରନ୍ତର ଉଦ୍ୟମ ।

ଖଟିଖିଆ ଅଧାପେଟ ଭରା ଭୋକିଲା ଶ୍ରମିକଙ୍କ ପାଇଁ ଆର୍ଥିକ ନ୍ୟାୟ ଏବଂ ସାମାଜିକ ମମତାର ସୁସଙ୍ଗତି ପ୍ରସଙ୍ଗରେ: ଗାନ୍ଧିଜୀଙ୍କର ସ୍ୱଷ୍ଟୋକ୍ତି ଥିଲା:– ''ଆର୍ଥିକ ସମାନତା ଅର୍ଥାତ

ସମତୁଲ କାର୍ଯ୍ୟ ନିଷ୍ପାଦନ ପରିବର୍ତ୍ତେ ନ୍ୟାର୍ଯ୍ୟ ଜୀବନକ୍ଷମ ମଜୁରି ଜଣେ ପରିଶ୍ରମୀ ଓକିଲ, ଅଥବା ଅମଲା କିମ୍ବା ଜଣେ ପରିଶ୍ରମୀ ଚିକିତ୍ସକ, ଅଧ୍ୟାପକଙ୍କ ପାଇଁ ଯେଉଁଭଳି ଅତ୍ୟାବଶ୍ୟକୀୟ, ଦୈହିକ ପରିଶ୍ରମୀ ଜଣେ ଅର୍ଦ୍ଧକୁଶଳୀ, ସମକୁଶଳୀ, କୁଶଳୀ–ଶ୍ରମିକ/ ମଜଦୁର/ ମଜୁରିଆ ଓ ମୂଲିଆ ଶ୍ରମିକଙ୍କ ପାଇଁ ଅନୁରୂପ ଭାବେ ଦର୍କାର । ପେଟକୁ ଦିଅ ପିଠିରେ ମୋଟି ଖଟାଅ । ନ୍ୟାର୍ଯ୍ୟ ମଜୁରୀ ନଦେଇ ଖଟାଇବା ଦୈହିକ ଶୋଷଣ ଭଳି ଏକ ଅକ୍ଷମଣୀୟ ଅପରାଧ ବ୍ୟତୀତ ଅନ୍ୟକିଛି ନୁହେଁ । (ଦ୍ରଷ୍ଟବ୍ୟ: ହରିଜନ ତା୨୨.୬.୧୯୩୫ରିଖ ସଂସ୍କରଣ) ବସ୍ତୁତଃ ଗାନ୍ଧୀ ଏବଂ ମାର୍କ୍ସ ଦୁହିଁଙ୍କ ଚିନ୍ତାଧାରାରେ ଆର୍ଥିକ ଅସମାନତାର ସ୍ୱରୂପ ରୂପରେଖ ଓ ତା'ର ନିରାକରଣର ନୀଳଛାପ ମଧ୍ୟରେ କିଛିଟା ସାଦୃଶ/ ମେଳ/ ସାମ୍ୟ ଥିଲା । ଏହି ଆର୍ଥିକ ସମତା ପ୍ରତ୍ୟେକଙ୍କୁ ତା'ର ଚାହିଦାନୁଯାୟୀ ଦିଆଯିବା ଚାହି । ମାର୍କ୍ସଙ୍କ ବ୍ୟାଖ୍ୟା ଏହି ମର୍ମରେ ମଧ୍ୟ ଏଇଭଳି । ସେ କ୍ଷେତ୍ରରେ ଅସମାନତା ହେବ, ଯେଉଁଠି ଜଣେ ବ୍ୟକ୍ତି, ଛଅଜଣ କୁଟୁମ୍ବ ବିଶିଷ୍ଟ ପରିବାର ବ୍ୟକ୍ତିଙ୍କ ସହ, ନିଜର ଚାହିଦାକୁ ସମତୁଲ କରି ସମାନତା ଲୋଡ଼ିବ । ଗାନ୍ଧୀଙ୍କ ପ୍ରବକ୍ତିଥିଲା: '' ପ୍ରତ୍ୟେକ ବ୍ୟକ୍ତି ନିଜ କ୍ଷେତ୍ରରେ ଆର୍ଥିକ ସମାନତାର ପ୍ରାରମ୍ଭ କରିପାରେ । ତାକୁ ରୋକିବା ଅଥବା ଅନ୍ୟ କେହି ତାକୁ ରାସ୍ତା ବତେଇବା ଜରୁରୀ ନୁହେଁ । ମୁଁ ଘୃଣା ନୁହଁ, ପ୍ରେମ ଓ ଶ୍ରଦ୍ଧାରସହ ଲୋକଙ୍କୁ ନିଜକଥା ବୁଝାଇବି ଏବଂ ଅହିଂସ୍ର ଭାବେ ଆର୍ଥିକ ସମାନତା ଉପୁଜାଇ ପାରିବି, ଏ ଆତ୍ମ ପ୍ରତ୍ୟୟ ମୋର ରହିଛି ।''

ଗାନ୍ଧିଜୀଙ୍କର ଶିଳ୍ପାୟନ ଦର୍ଶନ ସଂକୀର୍ଣ୍ଣ ନଥିଲା । ତଥାକଥିତ ସମାଜବାଦୀ ପ୍ରବକ୍ତାଙ୍କ ଭଳି ବାପୁଙ୍କର ମାନ୍ୟତା ଥିଲା କି ବୃହତ୍ ପୁଞ୍ଜି, କଳ ଓ ଶ୍ରମଶକ୍ତି ସଞ୍ଚାଳିତ କାରଖାନା ଓ ଉଦ୍ୟୋଗ ଉପରେ ରାଷ୍ଟ୍ରର ପ୍ରଭୁତ୍ୱ ଅଥବା ରାଜ୍ୟର ନିୟନ୍ତ୍ରଣ ନରହିବା ଶ୍ଳାଘ୍ୟ ଏବଂ ଏଭଳି ଶିଳ୍ପାୟନରେ କାର୍ଯ୍ୟରତ ଶ୍ରମଜୀବୀମାନଙ୍କ ଉନ୍ନତ କାର୍ଯ୍ୟ ପରିବେଶ ଏବଂ ଜୀବନକ୍ଷମ ମଜୁରି ପ୍ରଦାନ ସୁନିଶ୍ଚିତ କରାଯିବା ଚାହି । ମାନବୀୟ ସମ୍ବଳ ପରିବର୍ତ୍ତେ ଯାନ୍ତ୍ରିକ ସ୍ୱୟଂକ୍ରୀୟ ମେସିନର ଅଧିକ ଉପଯୋଗକୁ ବିରୋଧ ଘେନି ୧୯୩୧ରେ ଗୋଲ ଟେବୁଲ ବୈଠକରେ ଯୋଗ ଦେବାକୁ ଯାଇ ଲଣ୍ଡନରେ ଅବସ୍ଥାନ ସମୟରେ ଏକଦା ସାମ୍ବାଦିକଗଣ ବାପୁଙ୍କୁ ଏକ ସମ୍ବେଦନଶୀଳ ପ୍ରଶ୍ନ ପଚାରିଥିଲେ: '' ବାପୁ ! ତା'ହେଲେ ଏଇଥି ପାଇଁ ଶିଳ୍ପାୟନ କ୍ଷେତ୍ରରେ ଅଧିକ ସ୍ୱୟଂକ୍ରୀୟ ମେସିନର ବ୍ୟବହାରକୁ ତୀବ୍ର ବିରୋଧ କରୁଛନ୍ତି । କାରଣ, ଏଭଳି (ଶ୍ରମ ସମ୍ବଳ ନିୟୋଜନ ସଂକୋଚନକାରୀ)– ସ୍ୱୟଂକ୍ରୀୟ ମେସିନ ପ୍ରତିଷ୍ଠାପନ ଫଳରେ ପୁଞ୍ଜିପତିଙ୍କ ହାତରେ ଉତ୍ପାଦନ ଏବଂ ବିତରଣ ଶକ୍ତି ପ୍ରତ୍ୟର୍ପଣ ବାରାନ୍ତରରେ ଅଧିକ ନିରଙ୍କୁଶ/ସ୍ୱେଚ୍ଛାକ୍ରୀୟ କରିବା ଅବସମ୍ଭାବି ? ସାମ୍ବାଦିକ ବନ୍ଧୁମାନଙ୍କୁ ଗାନ୍ଧିଜୀଙ୍କ ରୋକଠୋକ ଜବାବ ଥିଲା: ' ହଁ ଏଇଥି ପାଇଁ ମୁଁ ବହୁଳ ସ୍ୱୟଂକ୍ରୀୟ ମେସିନ ପ୍ରତିଷ୍ଠାପନ ସପକ୍ଷରେ ନୁହେଁ । ତା ଛଡା ମୁଁ ବିଶେଷାଧିକାର ଅଥବା ଏକ ଚାଟିଆ ଅଧିକାରର ପରିପନ୍ଥୀ । କାରଣ ମାତ୍ରାଧିକ ଅଧିକାର/ କର୍ତ୍ତବ୍ୟ ବ୍ୟକ୍ତିକୁ ଭ୍ରଷ୍ଟ, ଦିଗଭ୍ରାନ୍ତ ଓ ଦୁର୍ନୀତିଗ୍ରସ୍ତ କରେ ଏବଂ ନିରଙ୍କୁଶ ଅଧିକାର ସବୁମତେ କ୍ଷମତାନ୍ଧ କରେ । ଉତ୍ପାଦନ ପ୍ରକ୍ରିୟା ସହ ସମଗ୍ର ଖାଉଟିଙ୍କର ସ୍ୱାର୍ଥ ବି ପ୍ରଚ୍ଛନ୍ନ ଭାବେ ଜଡିତ । ଏଣୁ ଯେଉଁ ଉତ୍ପାଦନ ଏବଂ ବିତରଣ ପ୍ରକ୍ରିୟା ସହ ସର୍ବସାଧାରଣ ଜନଗଣ ଭାଗୀଦାର ହେବାରୁ ବଞ୍ଚିତ ହୋଇଥାନ୍ତି, ତାହା ସର୍ବୋତଭାବେ ଖାରଜ କରାଯିବା ବିଧେୟ ଏବଂ ପରିତାଜ୍ୟ । ବାସ୍, ଏହା ହିଁ ମୋର ଦୃଷ୍ଟିକୋଣ ।''

ସଂକ୍ରାନ୍ତିପୁରୁଷ କାର୍ଲମାର୍କସ ଏବଂ ଫ୍ରେଡେରିକ୍ ଏଙ୍ଗେଲ ଯେଉଁ ସାମ୍ୟବାଦର ବଳିଷ୍ଠ ପ୍ରବକ୍ତା ଓ ପ୍ରବର୍ତ୍ତକ, ତାହାର ପୁଷ୍ଟକ ନିର୍ଯ୍ୟାସ ଓ ନିଃସାରଣ ହେଉଛି ଚତୁର୍ବିଧ । ଯଥା: ୧– ଉତ୍ପାଦନ ଉପରୁ ପୁଞ୍ଜିବାଦୀ ବ୍ୟବସ୍ଥାର ନିରଙ୍କୁଶ ନିୟନ୍ତ୍ରଣ ଓ କର୍ତ୍ତବ୍ୟର ଅବସାନ । ୨– ସମ୍ପତ୍ତି ଉପରେ ବ୍ୟକ୍ତିଗତ ମାଲିକାନା ପ୍ରଭୁତ୍ୱର ପରିସମାପନ । ୩– ସାମାଜିକ ପ୍ରଭୁତ୍ୱ/ ପ୍ରାଧିକାର କର୍ତ୍ତୃତ୍ୱାଧିନ ପ୍ରକ୍ରିୟାରେ ବିତରଣ ଓ ସାଧନ ହେବାର ପୁନଃବିନ୍ୟାସ/ ପୁନଃଗଠନ । ୪– ବର୍ଗ/ ଶ୍ରେଣୀ ବିଭେଦ୍ୟ ଭାବନାର କୁପ୍ରଭାବ ଜନିତ ପ୍ରଦୂଷଣ କବଳରୁ ସମାଜକୁ ଭାଇଚାରା ଭାବନା ତଥା ବୃହତପରିବାର ରୂପାନ୍ତରରେ, ନିରାପଦରେ ସୁରକ୍ଷିତ ରଖିବା । ପ୍ରକୃତପକ୍ଷେ ସାମ୍ୟବାଦର ଉପରୋକ୍ତ ଚତୁର୍ବିଧ ସିଦ୍ଧାନ୍ତ ସହ ଗାନ୍ଧିଜୀଙ୍କର ମତାନ୍ତର ଅଥବା ମନାନ୍ତର ନାହିଁ କହିଲେ ଚଳେ । ହେଲେ ନିଜସ୍ୱ ଚେତନାବୋଧର ସ୍ପଷ୍ଟୀକରଣ ଦେବାକୁ ଯାଇ ବାପୁଙ୍କର ସୁଚିନ୍ତିତ ଅଭିବ୍ୟକ୍ତି ଥିଲା, ''ମୁଁ ମଧ୍ୟ ସେଇସବୁ ସମସ୍ୟାର ସମାଧାନ ନିମିତ୍ତ ନିରନ୍ତର ପ୍ରଯତ୍ନଶୀଳ । ଯାହାର ସାମୁଖ୍ୟ ସାମ୍ୟବାଦୀ–ବିଶେଷଜ୍ଞ/ ବିଜ୍ଞାନୀମାନେ ମଧ୍ୟ କରୁଛନ୍ତି । ଫରକ୍ କେବଳ ଏତିକି, ମୁଁ ହିଂସା ନୁହେଁ ଅହିଂସା– ମାର୍ଗରେ ଅନୁବନ୍ଧିତ । ହିଂସାଦ୍ୱାରା କୌଣସି ସମସ୍ୟାର ସ୍ଥାୟୀ ସମାଧାନ ଅବସମ୍ଭାବୀ, ଏହା ମୁଁ ଅସ୍ୱୀକାର କରୁଛି । ସାମ୍ୟବାଦୀଙ୍କ ସହ ମୋର ଅମେଳ/ଭିନ୍ନତା/ପ୍ରଭେଦ/ମତଭେଦ କେବଳ ମୁଁ ସାମ୍ୟବାଦରେ ବିଶ୍ୱାସୀ । ଯଦି ସାମ୍ୟବାଦ ବିନା କୌଣସି ହିଂସା ଉପୁଜେ, ମୁଁ ତାକୁ ସ୍ୱାଗତ କରିବି । ହିଂସାଦ୍ୱାରା ଲକ୍ଷପ୍ରାପ୍ତ

ସାମ୍ୟବାଦୀ ସ୍ଥାୟୀ ହୋଇ ନପାରେ କେବେ । (ଦ୍ରଷ୍ଟବ୍ୟ: ୨.୬.୧୯୨୭)

ଏକଦା ଭାରତୀୟ ସାମ୍ୟବାଦୀ ରାଜନେତୃବୃନ୍ଦଙ୍କ ସହ ଖୋଲା ଆଳାପ ଓ ବିଚାର ବିମର୍ଷ ଅବସରରେ ମାର୍ଗଦର୍ଶୀ ମନିଷୀ ଓ ପ୍ରଜ୍ଞାପୁରୁଷ ବାପୁ ସ୍ୱଭାବ ସୁଲଭ ଢଙ୍ଗରେ ହସିହସି ରୋକଠୋକ ଦୋହରାଇଥିଲେ: ' ମୁଁ– ଦୃଢତା'ର ସହ ଏକଥା କହିପାରେ ଯେ ଆପଣମାନଙ୍କ ଅପେକ୍ଷା ବନ୍ଧୁଗଣ ମୁଁ ଜଣେ ସଚ୍ଚା ଓ ଆଚ୍ଛା କମ୍ୟୁନିଷ୍ଟ ଅଟେ । ଯଦି ସାମ୍ୟବାଦର ଅନ୍ତିମ ଉଦ୍ଦେଶିକା ମାନବତାର ସେବାରେ ଅଂଗୀକୃତ, ତେବେ ଆପଣଙ୍କ ସାମ୍ୟ ସହ ସୌମ୍ୟ ଅହିଂସାର ସୁସଂହତ ସମନ୍ୱୟ ସର୍ବାଦୌକରଣୀୟ, ବିଶ୍ୱମାନବିକତାର କଲ୍ୟାଣ ପ୍ରତ୍ୟର୍ପିତ ଏବଂବିଧ ଆଦର୍ଶ, ବିଶେଷକରି ଯେଉଁମାନେ ଦଳିତ ନିଷ୍ପେସିତ ଓ ସର୍ବହରା, ସେମାନଙ୍କର ଅନ୍ତୋଦୟ ଆମ ରକ୍ତକୋଷରେ ଅନୁବନ୍ଧିତ । ଆମେ ଏଇଥି ପାଇଁ ଆମର ପ୍ରାତକାଳୀନ ପ୍ରାର୍ଥନା ଓ ପାଥେୟରେ ସଂକଳ୍ପ ନେଇଥାଉ ଶାନ୍ତି ପାଠ ମାଧ୍ୟମରେ ।

ଶ୍ରମଶକ୍ତି ଘେନି ପରିଶେଷରେ ମାର୍କ୍ସୀୟ ଦର୍ଶନର ବିଲକ୍ଷଣ/ ତଥା ଦ୍ୱନ୍ଦାତ୍ମବିଭୁକ ସମ୍ପର୍କରେ ଏହା ସୂଚନାଯୋଗ୍ୟ ଯେ: ମାର୍କ୍ସୀୟ ସମାଜବାଦୀ ବାସ୍ତବବାଦ ବିଶ୍ଳେଷଣାତ୍ମକ ଏବଂ ସମାଜ ତାନ୍ତ୍ରିକ ଦୁଇ ଆଧାରଶିଳା ଉପରେ ପର୍ଯ୍ୟବସିତ । ମାକ୍ସୀମ ଗର୍କୀଙ୍କ ଭାଷାରେ: ମଣିଷ ଅପେକ୍ଷା ମଣିଷର ଶ୍ରମ ଅଧିକ ମହତ୍ତ୍ୱପୂର୍ଣ୍ଣ । ମଣିଷର ଜୀବନକାଳ ଶହେବର୍ଷ ମଧ୍ୟରେ ଶେଷ ହୋଇପାରେ । କିନ୍ତୁ ତା'ର ଶ୍ରମଜାତ କାର୍ଯ୍ୟ ଅମର ହୋଇରହେ ଅନନ୍ତକାଳ ପର୍ଯ୍ୟନ୍ତ । ଲେଲିନ୍‌ଙ୍କ ପରିଭାଷାରେ ଜୀବନ ହେଉଛି ଏକ ନିରବଚ୍ଛିନ୍ନ ଗତିପ୍ରବାହ ଓ ବିବର୍ତ୍ତନ ଏହାର ଧର୍ମ । ଦ୍ୱନ୍ଦ୍ୱ ଏବଂ ସଂଘର୍ଷ ମଧ୍ୟରେ ଇତିହାସ ତା'ର ଗତିପଥ ବଦଳାଏ ।

ଏକଦା ଆଲୋଡନ ସୃଷ୍ଟିକାରୀ ମାର୍କ୍ସୀୟ ଦଶାଦର୍ଶନର ପରବର୍ତ୍ତୀ ସମୟର ରୂପାନ୍ତରଣ ଥିଲା । ଅବୋଧ୍ୟ, ଅନତିକ୍ରମ୍ୟ ଏବଂ ଅନେକଟା ଅବ୍ୟବସ୍ଥିତ । ଏଇଥି ପାଇଁ ମାର୍କ୍ସୀୟ ଦର୍ଶନର ସମର୍ଥକଙ୍କ ସଂଖ୍ୟାକୁ, ପରିପନ୍ଥୀ ସମାଲୋଚକଙ୍କ ସଂଖ୍ୟା ମନ୍ଦିରକୁ ମୁଖଶାଳା ଟପିଲାଭଳି, ଟପିଗଲା ବିରୋଧାଭାଷ । ସେମାନଙ୍କ ସମାଲୋଚନା, ଉଭୟ ତତ୍ତ୍ୱ ଏବଂ ତା'ର ବ୍ୟାଖ୍ୟା ଏବଂ କାର୍ଯ୍ୟାନ୍ୱୟନ ଉପରେ ପର୍ଯ୍ୟବସିତ । ମାର୍କ୍ସୀୟ ଦର୍ଶନର ଉପରୋକ୍ତ ଶ୍ରମତତ୍ତ୍ୱକୁ ଆଧୁନିକ ଅର୍ଥନୀତିଜ୍ଞମାନେ ଧାରୀୟ/ପ୍ରାନ୍ତିକ ଉପଯୋଗୀତାକୁ ଭିତ୍ତିକରି ଗ୍ରହଣ କରିବାକୁ ଅସ୍ୱୀକାର କରିଲାଗିଲେ । ଏକଥା ସତ ଯେ: ମାର୍କ୍ସ ଏବଂ ଏଞ୍ଜେଲ, ସାମ୍ୟବାଦୀ ଅର୍ଥନୀତି କେଉଁ ପଦ୍ଧତି ଅନୁସରଣ କରି ସଠିକ ଭାବେ କାର୍ଯ୍ୟାନ୍ୱୟନ ସମର୍ଥ ହେବ, ସେ ସମ୍ପର୍କରେ ଅଧିକ ଗବେଷଣା ଆଧାରିତ ତଥ୍ୟ/ସୂତ୍ର ପ୍ରତିବେଦନ କରିନଥିଲେ । ଖ୍ୟାତନାମା ଅର୍ଥନୀତିଜ୍ଞ ମିଲ୍‌ଟନ ଫ୍ରାଡ୍‌ମ୍ୟାନ୍‌ଙ୍କର ସୁଚିନ୍ତିତ ନିଜସ୍ୱ ମନ୍ତବ୍ୟ ଏଣୁ ଥିଲା ଏହିଭଳି: ସର୍ବୋପରି ବ୍ୟକ୍ତିବିଶେଷଙ୍କ ସାମର୍ଥ୍ୟର ପାର୍ଥକ୍ୟକୁ ଅଣଦେଖା କରୁଥିବା ମାର୍କ୍ସୀୟ ଦିଶା–ଦର୍ଶନ, ବାମପନ୍ଥୀ ରାଜନୈତିକ ଦଳ ମଧ୍ୟରେ ଦକ୍ଷିଣ ଓ ବାମଡେଣାର ମତପାର୍ଥକ୍ୟ ସାଙ୍ଗକୁ, ଗଣତାନ୍ତ୍ରିକ ସମାଜବାଦୀ ଓ ସାମାଜିକ ଗଣତନ୍ତ୍ରବିତ୍ ନୀତିଗତ ଭାବେ ଏହାକୁ କ୍ରମଶଃ ବିରୋଧ ଓ ତା'ପରେ ପ୍ରତ୍ୟାଖ୍ୟାନ କରି ଲାଗିଲେ । ସେମାନଙ୍କର ଯୁକ୍ତି ହେଲା ସମାଜବାଦ କେବଳ ଶ୍ରେଣୀଦ୍ୱନ୍ଦ୍ୱ ଏବଂ ହିଂସାତ୍ମକ ବିପ୍ଳବ ମାଧ୍ୟମରେ ବାସ୍ତବାୟିତ ହୋଇପାରେ । ବହୁ ସଂନ୍ତ୍ରାସବାଦୀ, ଶ୍ରେଣୀ ବିହୀନେ ସମାଜ ପ୍ରତିଷ୍ଠାର ଠିକଣା– ମାର୍ଗ ବୋଲି ଏପରିକି ଅସ୍ୱୀକାର କରିବାକୁ କୁଣ୍ଠାବୋଧ କଲେ ନାହିଁ । ବାମପନ୍ଥୀଙ୍କ ମଧ୍ୟରୁ ଅନେକ ମାର୍କସୀୟ ଦର୍ଶନ ଓ ତତ୍ତ୍ୱ ସମ୍ବଳିତ ଐତିହାସିକ ବସ୍ତୁବାଦ ଏବଂ ଶ୍ରମତତ୍ତ୍ୱର ମୂଲ୍ୟ ଘେନି ନିଜନିଜର ଅନାସ୍ଥାଭାବ ପ୍ରକାଶ ସହ ବାରାନ୍ତରରେ ପୁଞ୍ଜିବାଦର ସମାଲୋଚନା ଏବଂ ସମାଜବାଦୀର ସମର୍ଥନରେ ମୁଖର ସଂପ୍ରତି ଅତ୍ର ତତ୍ର ସର୍ବତ୍ର, କାଁ ଭାଁ ଭାବେ ।

ପରିବର୍ତ୍ତିତ ପରିପ୍ରେକ୍ଷୀରେ ତାତ୍ତ୍ୱିକ ପ୍ରାସଙ୍ଗିକତା ଘେନି ମାର୍କ୍ସ ଅଥବା ବାପୁଙ୍କ ଦିଶାଦର୍ଶନ ଆଧାରିତ ଏବଂବିଧ ଭିନ୍ନ ମତ, ଭିନ୍ନ ଅବବୋଧ ସତ୍ତ୍ୱେ ଦୁଇ ମାର୍ଗଦର୍ଶୀ ମହାମନିଷୀ ଯେ ଶ୍ରମଜୀବୀର ମାନବୀୟ ମର୍ଯ୍ୟାଦା ସ୍ୱାଧୀକାର ଓ ସର୍ବାଙ୍ଗୀନ କଲ୍ୟାଣ– ସାରଣୀର ଅନନ୍ୟ ପଥପ୍ରଦର୍ଶକ ମହାମାନ୍ତ୍ରିକ ତଥା ପ୍ରାତସ୍ମରଣୀୟ ପ୍ରେରଣା ପୁରୁଷ, ଏହା ଅସ୍ୱୀକାର କରିବା ଆତ୍ମଘାତୀ ଏବଂ କୃତଘ୍ନତା ହେବ ଆମ ସମସ୍ତଙ୍କ ପାଇଁ । ସେଇ ଦୁଇ ବିଶ୍ୱବିଶୃତ ଶ୍ରମ ହିତୈଷୀ ପ୍ରେରଣା ପୁରୁଷଙ୍କ ଅପାର କରୁଣା ଓ ପ୍ରେରଣା ସମସ୍ତ ମେହନତୀ ମଣିଷଙ୍କ ପାଇଁ ସୌଭାଗ୍ୟମୟ, ବିଘ୍ନ ବିରହିତ ଓ ଶୁଭଙ୍କରୀ ହେଉ । ତାଙ୍କର ଦିବ୍ୟ ଦିଶାଦର୍ଶନ ଅସତ୍ୟରୁ ସତ୍ୟକୁ, ଅନ୍ଧାରରୁ ଆଲୋକକୁ ଏବଂ ମୃତ୍ୟୁରୁ ଅମୃତର ମାର୍ଗଦର୍ଶନ କରାନ୍ତୁ । ଅଧୁରା ପ୍ରତ୍ୟାଶାକୁ ପୂର୍ଣ୍ଣ ଏବଂ ପୂର୍ଣ୍ଣରୁ ପୂର୍ଣ୍ଣତାରେ ପରିପୂର୍ଣ୍ଣ/ ସମ୍ପୂର୍ଣ୍ଣ କରନ୍ତୁ । ଏତିକି ପ୍ରାର୍ଥନା ।

ଲୁଇସ୍ ରୋଡ୍, ଭୁବନେଶ୍ୱର–୧୪

# ମଇ ଦିବସ

ବିଦ୍ୟାଧର ବାରିକ୍

ମଇ ଦିବସର ତାତ୍ପର୍ଯ୍ୟ କ'ଣ ? କାହିଁକି ଏହା ପାଳନ କରାଯାଏ ? 'ଜଗତିକରଣ' ବ୍ୟବସ୍ଥାରେ ଯେତେବେଳେ ଶିଳ୍ପ ଓ ଶିଳ୍ପ ଶ୍ରମିକର ସଂଜ୍ଞା ଓ ସ୍ୱରୂପ ବଦଳେ ସେତେବେଳେ ଏହାର ପ୍ରାସଙ୍ଗିକତା କେତେଦୂର ଯଥାର୍ଥ ??? ଏସବୁ ପ୍ରଶ୍ନ ଅବତାରଣା କରିବାର ଉଦ୍ଦେଶ୍ୟ ହେଉଛି– ' ମୁକ୍ତି, ସମତା ଓ ଭ୍ରାତୃତ୍ୱ' ହାସଲର ଲକ୍ଷ୍ୟସ୍ଥଳରେ ଆମେ ଏଯାବତ୍ ପହଞ୍ଚିପାରିନାହୁଁ କେବଳ ବିଧିରକ୍ଷା ନିମନ୍ତେ ଗତାନୁଗତିକ ଢଙ୍ଗରେ ମଇ– ପହିଲା ତାରିଖ ଦିନ ଶ୍ରମିକ ସଭା ଓ ଶୋଭାଯାତ୍ରା କରି ଦେଇ ଆମର ଦାୟିତ୍ୱ ଓ କର୍ତ୍ତବ୍ୟ ଯେ ସମ୍ପାଦନ ହୋଇଗଲା, ତାହା ଭାବିବା ଉଚିତ୍ ନୁହେଁ । ଯେଉଁ ଆମେରିକାରେ 'ମଇ ଦିବସ' ପ୍ରଥମେ ଆରମ୍ଭ ହୋଇଥିଲା, ସେ ରାଷ୍ଟ୍ର ଆଜି ଧନୀ, ପୁଞ୍ଜିପତି ରାଷ୍ଟ୍ରଭାବେ ସାରା ବିଶ୍ୱର ଅର୍ଥନୀତିକୁ କବଳିତ କରିଛି । ସେଠାରେ ମଇ ଦିବସ ଆଜି ଆନନ୍ଦ ଉତ୍ସବର ଦିନ ଭାବେ ପାଳିତ ହେଉଛି । ବିଶ୍ୱର କିନ୍ତୁ ଅନ୍ୟ ଦରିଦ୍ର ଅନୁନ୍ନତ ରାଷ୍ଟ୍ରମାନଙ୍କରେ ଏହା ବିପ୍ଳବର ଦିନଭାବେ ପାଳିତ ହୋଇଥାଏ, ଯେ ପର୍ଯ୍ୟନ୍ତ ସମାଜରେ ବିଷମତା, ଶୋଷଣ, କଷଣ, ଦାରିଦ୍ର୍ୟ, କ୍ଷୁଧା ବଳବତ୍ତର ରହିଛି, ସେ ପର୍ଯ୍ୟନ୍ତ ଏଇ 'ମଇ ଦିବସ'ର ପ୍ରାସଙ୍ଗିକତା ରହିଛି ଓ ରହିବ ।

ଆଜିକୁ ୧୨୬ ବର୍ଷ ତଳର ଘଟଣା । ଅନ୍ଧାରୀ ଯୁଗର କାହାଣୀ କହିଲେ ଅତ୍ୟୁକ୍ତି ହେବନାହିଁ। ୧୮୮୧ରେ ଆମେରିକା ଶ୍ରମିକମାନଙ୍କର ଫେଡେରେସନ୍–ଏଏଫ୍ଏଲ୍ ଗଠିତ ହୋଇଥିଲା। ତା'ର ମାତ୍ର ଦୁଇବର୍ଷ ପୂର୍ବରୁ 'ଏଡିସନ୍' ବିଜୁଳି ଆଲୋକ ଉଦ୍ଭାବନ କରିଥିଲେ। ଠିକ୍ ତା'ର ପାଞ୍ଚବର୍ଷ ପୂର୍ବରୁ 'ଟେଲିଫୋନ୍ ଉଦ୍ଭାବନ ହୋଇଥିଲା । ସେତେବେଳେ ଅଟୋ, ଏରୋପ୍ଳେନ୍, ରେଡିଓ, ଟେଲିଭିଜନ୍, ଏୟାରକଣ୍ଡିସନ, କାଲକୁଲେଟର, କମ୍ପ୍ୟୁଟର ସ୍ୱପ୍ନବତ ଥିଲା, ଆମେରିକା ଶ୍ରମିକ ଫେଡେରେସନ୍ ଗଠନ ହେବାର ଦଶ ବାରବର୍ଷ ପୂର୍ବରୁ ବ୍ରିଟିଶ ଟ୍ରେଡ ୟୁନିୟନ କଂଗ୍ରେସ' ଗଠିତ ହୋଇଥିଲା । ଉକ୍ତ ସଙ୍ଗଠନ ଆମେରିକା ସମେତ ପୃଥିବୀର ବିଭିନ୍ନ ମହାଦେଶ ଓ ଦେଶର ଶ୍ରମିକ ଆନ୍ଦୋଳନକୁ ନାନା ଦିଗରେ ପ୍ରଭାବିତ ଓ ପ୍ରୋତ୍ସାହିତ କରିଥିଲା । ସେତେବେଳେ ଶିଳ୍ପ କାରଖାନାଗୁଡିକରେ ଶ୍ରମିକମାନଙ୍କ ପାଇଁ ନିର୍ଦ୍ଦିଷ୍ଟ କାର୍ଯ୍ୟ ନିର୍ଘଣ୍ଟ ବା ଶ୍ରମ କାନୁନ ନଥିଲା। ମାଲିକମାନେ ଶ୍ରମିକମାନଙ୍କୁ ପଶୁ ଭଳି ବ୍ୟବହାର କରୁଥିଲେ। ଦିନକୁ ଆଠଘଣ୍ଟା କାମ କରିବାର ଦାବି ନେଇ ପ୍ରଥମେ ଆମେରିକାର ମେହନତୀ ମଣିଷମାନେ ବିପ୍ଳବର ବିଗୁଲ ବଜାଇଥିଲେ। ୧୮୮୬ ମସିହା– ମଇ ପହିଲା ତାରିଖ, ଆମେରିକାର ଚିକାଗୋ ସହରରେ ବିରାଟ ଶ୍ରମିକ ସଭା ଓ ଶୋଭାଯାତ୍ରା ହୋଇଥିଲା । 'ହେ–ମାର୍କେଟ ସ୍କୋୟାର' ଲୋକାରଣ୍ୟ ହୋଇଉଠିଲା । ମାଲିକ ଓ ପୁଞ୍ଜିପତିମାନେ ଏଥିରେ ଆତଙ୍କିତ ହୋଇପଡିଲେ। ବିକ୍ଷୋଭକୁ ଦମନ କରିବାକୁ ସେମାନେ ଓ ପୋଲିସ୍ ବାହିନୀକୁ ପ୍ରଭାବିତ କଲେ । ଆନ୍ଦୋଳନକୁ ପ୍ରତିହତ କରିବାକୁ ପୋଲିସ୍ ବାହିନୀ ହିଂସ୍ର ହୋଇଉଠିଲେ । ଶ୍ରମିକ ସମାବେଶ ଉପରେ ଆଖିବୁଜା ଲାଠିମାଡ ଓ ଗୁଳିବର୍ଷଣ ଚାଲିଲା, 'ହେ–ମାର୍କେଟ ସ୍କୋୟାର' ରକ୍ତ ରଞ୍ଜିତ ହେଲା, ଅନେକ ନିରୀହ ଶ୍ରମିକ ସେଇଠି ଟଳି ପଡିଲେ। ଅସଂଖ୍ୟ କ୍ଷତ,ବିକ୍ଷତ ହେଲେ । ମିଥ୍ୟା ମୋକଦ୍ଦମାରେ ଅନେକ ଶ୍ରମିକଙ୍କୁ ଜଡିତ କରି ନିରନ୍ଧ୍ର କାରାଗାରରେ ନିକ୍ଷେପ କରାଗଲା । ଶ୍ରମିକ ନେତା, ପାରନସ ସ୍ୱାଇଜ୍, 'ଫିସର' ଏବଂ 'ଏଙ୍ଗେଲସ୍'ଙ୍କୁ ନିର୍ମମଭାବେ ଫାଶୀଖୁଣ୍ଟରେ ଝୁଲାଇ ଦିଆଗଲା । 'ନିବେସ୍କାଓ୍ୱାବ' ଏବଂ 'ଫିଲଡେନ୍'ଙ୍କୁ ଦୀର୍ଘ କାରାଦଣ୍ଡ ଭୋଗିବାକୁ ପଡିଲା ।

ଆମେରିକା ଶ୍ରମଜୀବୀମାନଙ୍କର ଏଇ ବିପ୍ଳବ କେବଳ ସେ ଦେଶରେ ସୀମିତ ହୋଇ ରହିଲା ନାହିଁ । ଏହା ୟୁରୋପ ସମେତ ବିଭିନ୍ନ ମହାଦେଶ ଓ ଦେଶ ମଧ୍ୟରେ ପ୍ରସାରିତ ହେଲା । ୧୮୮୯ ମସିହାଠାରୁ, ପ୍ୟାରିସ' ସହରରେ 'ମଇପହିଲା'କୁ 'ବିଶ୍ୱ ଶ୍ରମିକ ଦିବସ'

ରୂପେ ପାଳନ କରିବାକୁ ନିଷ୍ପତ୍ତି ଗ୍ରହଣ କରାଗଲା ଏବଂ ୧୮୯୦ ମସିହାଠାରୁ ଏଇ ଦିବସକୁ ବିଶ୍ୱଶ୍ରମିକ ଦିବସଭାବେ ପାଳନ କରାଯାଉଛି ସେଇଦିନଠାରୁ ଆଜି ପର୍ଯ୍ୟନ୍ତ ବିଶ୍ୱର କୋଣେ ଅନୁକୋଣେ ଶ୍ରମିକମାନଙ୍କର ନ୍ୟାୟୋଚିତ ଦାବି ହାସଲ ପାଇଁ ଅନେକ ସଂଘର୍ଷ ଘଟିଛି ଓ ଅନେକ ଶ୍ରମିକ ନେତା, କର୍ମୀ ସହିଦ୍ ହୋଇଛନ୍ତି। ସେମାନଙ୍କୁ ଶ୍ରଦ୍ଧାଞ୍ଜଳି ଦେବା ଓ ଆଗାମୀ ଦିନ ପାଇଁ ନୂତନ ଶପଥ ନେବା ହେଉଛି ଏଇ ଦିବସର ତାତ୍ପର୍ଯ୍ୟ ।

ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୯୧୯), ଋଷବିପ୍ଳବ (୧୯୧୭), ଲିଗ୍ ଅଫ୍ ନେସ୍‌ନସ୍ ବା ଜାତିସଂଘ (୧୯୧୯) ପ୍ରତିଷ୍ଠା ଏବଂ ଏହାର ଶ୍ରମସମ୍ପର୍କିତ ଶାଖା ଆଇ.ଏଲ୍.ଓ. ଗଠନ ପରେ ବିଶ୍ୱ ଇତିହାସରେ ବହୁ ପରିବର୍ତ୍ତନ ଘଟିଯାଇଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ (୧୯୩୯-୪୫), ଭାରତ'ର ସ୍ୱାଧୀନତା (୧୯୪୭ ଅଗଷ୍ଟ ପନ୍ଦର) ଏବଂ ଔପନିବେଶ ଶାସନାଧୀନ ବିଶ୍ୱର ଅନେକ ରାଷ୍ଟ୍ରର ସ୍ୱାଧୀନତା ହାସଲ ବିଶ୍ୱ ମାନଚିତ୍ରକୁ ବଦଳାଇ ଦେଇଛି । ପୃଥିବୀର ବିଭିନ୍ନ ଦେଶର ଗମନା-ଗମନ, କୃଷି, ଶିଳ୍ପ, ବାଣିଜ୍ୟ, ଜ୍ଞାନ, ବିଜ୍ଞାନ ଓ ସଂଚାର ବ୍ୟବସ୍ଥାର ବିରାଟ ପରିବର୍ତ୍ତନ ଘଟିଛି । ଏଇ ଦ୍ରୁତ ପରିବର୍ତ୍ତନ ଘଟଣାବଳୀ ମୂହୂର୍ତ୍ତକ ମଧ୍ୟରେ ଟିଭି, ଇଣ୍ଟରନେଟ୍, ମୋବାଇଲ, ସମ୍ବାଦପତ୍ର ମାଧ୍ୟମରେ ପ୍ରସାରିତ ହେଉଛି । ପୃଥିବୀର ଦୂରତ୍ୱ ବ୍ୟବଧାନ କମିଯାଇଛି । 'ବିଶ୍ୱ ବାଣିଜ୍ୟ ସଂସ୍ଥା (ଡବ୍ଲୁଟିଓ), ଆନ୍ତର୍ଜାତିକ ମୁଦ୍ରାପାଣ୍ଠି (ଆଇଏମ୍ଏଫ୍), ବିଶ୍ୱବ୍ୟାଙ୍କ ଓ ବହୁ ଦେଶୀୟ କମ୍ପାନୀ ପ୍ରତିଷ୍ଠା ହୋଇ ପୁଞ୍ଜି ସମ୍ରାଟ ଆମେରିକା, ଆଜି ବିଶ୍ୱର ବିଭିନ୍ନ ରାଷ୍ଟ୍ରକୁ କବଳିତ କରିଛି ଏକ ପକ୍ଷରେ 'ବିକାଶଶୀଳ' ରାଷ୍ଟ୍ର ସୁଖ, ସମୃଦ୍ଧିର ଶିଖରରେ ପହଞ୍ଚିଥିଲାବେଳେ ଅନ୍ୟପକ୍ଷରେ 'ବିକାଶମୁଖୀ' ଓ ଅନୁନ୍ନତ ରାଷ୍ଟ୍ର ଦେଶଗୁଡିକରେ ସାମାଜିକ, ଆର୍ଥିକ ବୈଷମ୍ୟ, ଶୋଷଣ, ଅସମତା, ଅତ୍ୟାଚାର ଓ ଉତ୍ପୀଡନ ବୃଦ୍ଧି ପାଉଛି । ଏହାର ପ୍ରଥମ ଶୀକାର ହେଉଛନ୍ତି- ମେହନତୀ ଶ୍ରମଜୀବୀ, ସୁତରାଂ ଏ ସବୁର ମୁକାବିଲା ପାଇଁ ଶ୍ରମିକ ଏକତା ଅନିବାର୍ଯ୍ୟ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆମଦେଶରେ 'ଶିଳ୍ପବିପ୍ଳବ' ଆରମ୍ଭ ହୋଇଥିଲା । ୧୮୫୦ରୁ ୧୮୭୫ ମଧ୍ୟରେ ବମ୍ବେ(ମୁମ୍ବାଇ)ର ଲୁଗାକଳ, କଲିକତା(କୋଲକାତା)ର ଚଟକଳ ସ୍ଥାପନ ସଙ୍ଗେ ସଙ୍ଗେ ରେଳବାଇ, କୋଇଲାଖଣି, ଚା'ବଗିଚା, ବନ୍ଦର ଇତ୍ୟାଦିରେ ପୁଞ୍ଜିବାଦୀ ବ୍ୟବସ୍ଥାରେ ଉତ୍ପାଦନ ଆରମ୍ଭ ହେଲା । ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ଛାପାଖାନା, ଯୁଦ୍ଧାସ୍ତ୍ର କାରଖାନା ଓ ବିଦେଶୀ ତଥା ଘରୋଇ ମାଲିକାନାରେ କ୍ଷୁଦ୍ର, ମଧ୍ୟମ କଳ-କାରଖାନା, ଟାଟା ଲୌହ ଇସ୍ପାତ କାରଖାନା (୧୯୧୨) ପ୍ରତିଷ୍ଠା ହେଲା । ସ୍ୱାଧୀନତା ପରେ ଦେଶକୁ ସାମ୍ବଲମ୍ବନଶୀଳ କରିବାକୁ ବିଭିନ୍ନ ବୃହତ୍ତ, ମଧ୍ୟମ ଓ କ୍ଷୁଦ୍ର ଶିଳ୍ପମାନ ଗଢିଉଠିଲା । ପ୍ରାଥମିକ ଅବସ୍ଥାରେ ଶିଳ୍ପ-କାରଖାନାରେ ନିଯୁକ୍ତ ଶ୍ରମିକମାନେ ଥିଲେ ମୁଖ୍ୟତଃ ଅନଭିଜ୍ଞ ଓ ଅଣକୁଶଳି। ସେମାନେ କୃଷିକ୍ଷେତ୍ରରୁ ଶିଳ୍ପକ୍ଷେତ୍ରକୁ ଆସିଥିଲେ। ଶିଳ୍ପସଂସ୍କୃତି ସହିତ ସେମାନେ ଆଦୌ ଅଭ୍ୟସ୍ତ ନଥିଲେ । ସୁତରାଂ ଶିଳ୍ପ-କାରଖାନା ପ୍ରତିଷ୍ଠା ସହ ତାଳଦେଇ ଆମଦେଶରେ ଶ୍ରମିକ ସଂଗଠନ ଓ ଶ୍ରମ ଆନ୍ଦୋଳନ ମୁଣ୍ଡଟେକି ନଥିଲା । ଏଥିପାଇଁ ବହୁବର୍ଷ ବିତିଗଲା । ଏହାର ସୁଯୋଗ ନେଇ ମାଲିକ ଓ ଶିଳ୍ପପତିମାନେ ଶ୍ରମିକମାନଙ୍କୁ ମନଇଚ୍ଛା ଶୋଷଣ କଲେ । ପ୍ରାରମ୍ଭିକ ଅବସ୍ଥାରେ ଭାରତୀୟ ଶ୍ରମିକମାନଙ୍କର ଏଇ ଦୁର୍ଦ୍ଦଶା ବିଲାତ(ଇଂଲଣ୍ଡ)ର ନାଗରିକ ସମାଜ ଦୃଷ୍ଟି ଆକର୍ଷଣ କରିଥିଲା। ପରେ ପରେ ଭାରତର ସମାଜ ସୁଧାରକମାନେ ଏଥିପ୍ରତି ଆଗ୍ରହ ପ୍ରକାଶ କରି ଶ୍ରମିକ ସଂଗଠନ ପାଇଁ ଆଗେଇ ଆସିଥିଲେ, ସେଇମାନେ ହିଁ ଆମଦେଶର ଶ୍ରମିକ ଆନ୍ଦୋଳନର ପ୍ରଥମ ଶୁଭଶଂଖ ନାଦ କରିଥିଲେ । କମ୍ ମଜୁରି, ଅନିୟମିତ କାର୍ଯ୍ୟ ନିର୍ଘଣ୍ଟ, ଅସ୍ୱାସ୍ଥ୍ୟକର ପରିବେଶ, ମହିଳା ଓ ଶିଶୁ ଶ୍ରମିକମାନଙ୍କ ପ୍ରତି ଅମାନୁଷିକ ବ୍ୟବହାର, ଅକଥନୀୟ ଶୋଷଣ ଓ ନିର୍ଯାତନା, ମାଲିକ ବା ଶିଳ୍ପପତି ଓ ସରକାରୀ କଳର ଚରମ ଉଦାସୀନତା ଏଥିରେ ଇନ୍ଧନ ଯୋଗାଇଥିଲା । ଆଇଏଲ୍‌ଓରେ ଦେଶର ଶ୍ରମିକ ଶ୍ରେଣୀର ପ୍ରତିନିଧିତ୍ୱ କରିବା ପାଇଁ ଗଠିତ ହେଲା- ଅଖିଳ ଭାରତୀୟ ଟ୍ରେଡ୍ ୟୁନିୟନ୍ କଂଗ୍ରେସ- ଏଆଇଟିୟୁସି (୧୯୨୦), 'ଜାତୀୟ କଂଗ୍ରେସ'ର ପୁରୋଧା ପଞ୍ଜାବ କେଶରୀ ଲାଲା ଲଜପତ ରାୟ ଥିଲେ ଏହାର ସ୍ଥାପୟିତା ସଭାପତି । ଗଠନ କାଳରେ ଏଆଇଟିୟୁସି, ସମ୍ବିଧାନରେ ନିର୍ଦ୍ଦିଷ୍ଟ ରାଜନୈତିକ ଅଭିମୁଖ୍ୟ ନଥିଲା । ଏହାଥିଲା ଶ୍ରମିକମାନଙ୍କର ଜାତୀୟମଞ୍ଚ ଯେଉଁଥିରେ-ମଡରେଟସ୍, ଲିବେରାଲସ୍, ରେସ୍‌ପନ୍‌ସିଭିଷ୍ଟ, ନେସ୍‌ନାଲିଷ୍ଟ, କୋ.ଅପରେସନ୍, ଏକ୍ସଟ୍ରିମିଷ୍ଟ, ହୋମରୁଲରସ୍, ସ୍ୱରାଜିଷ୍ଟ, ଇଣ୍ଡିପେଣ୍ଡେଟିଷ୍ଟ, ନନ୍-କୋ ଅପରେଟରସ୍‌ମାନେ ସମ୍ପୃକ୍ତ ଥିଲେ । ସ୍ଥାପନ କାଳରେ ଏଆଇଟିୟୁସି ଭାରତୀୟ ଜାତୀୟ କଂଗ୍ରେସ ସହିତ ସମନ୍ୱୟରକ୍ଷା କରି ସ୍ୱାଧୀନତା ସଂଗ୍ରାମ ଓ ଜାତୀୟ ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା। ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଏହା ନିର୍ଦ୍ଦିଷ୍ଟ ରାଜନୈତିକ ଆଭିମୁଖ୍ୟ ଓ ସିଦ୍ଧାନ୍ତକୁ ଗ୍ରହ କରିଥିଲା।ସ୍ୱାଧୀନତାର ପ୍ରାକ୍ କାଳରେ ଏବଂ ସ୍ୱାଧୀନତା ପରେ କଂଗ୍ରେସ, ସୋସିଆଲିଷ୍ଟ, କମ୍ୟୁନିଷ୍ଟ, ରାଷ୍ଟ୍ରବାଦୀ ଇତ୍ୟାଦି ରାଜନୈତିକ ଦର୍ଶନ ଓ ଆଭିମୁଖ୍ୟରେ ଆଇଏନ୍‌ଟିୟୁସି, ହିନ୍ଦ୍ ମଜଦୁର ସଭା, ୟୁଟିୟୁସି, ବିଏମ୍ଏସ୍, ସିଆଇଟିୟୁ ପ୍ରମଖ କେନ୍ଦ୍ରୀୟ ଶ୍ରମିକ ସଂଗଠନ ଓ ନେସନାଲ ଫେଡେରେସନ୍‌ମାନ ଗଠିତ ହୋଇଛି । ନିଜର ସମ୍ବିଧାନରେ ପ୍ରତ୍ୟେକ ଶ୍ରମିକ ସଙ୍ଗଠନ

ଏହା ମୁକ୍ତି, ସ୍ୱାଧୀନ ଓ ଗଣତନ୍ତ୍ର ଶ୍ରମିକ ସଙ୍ଗଠନ ବୋଲି ପ୍ରତିପାଦିତ କରିଥିଲେ ମଧ୍ୟ ସେମାନଙ୍କର କାର୍ଯ୍ୟଶୈଳୀରେ ରାଜନୈତିକ ଦର୍ଶନ ଓ ଆଭିମୁଖ୍ୟ ସ୍ପଷ୍ଟ ପ୍ରତୀୟମାନ ହୋଇଥାଏ । ସଂପ୍ରତି– କେନ୍ଦ୍ର ଶ୍ରମ ବିଭାଗ' ପକ୍ଷରୁ କେନ୍ଦ୍ରୀୟ ଶ୍ରମିକ ସଂଗଠନ ସଭ୍ୟ ସଂଖ୍ୟା ଯାଞ୍ଚ ପ୍ରକ୍ରିୟା ଆରମ୍ଭ ହୋଇଛି । ୨୦୧୧ ମସିହା ଡିସେମ୍ବର ଶେଷ ସୁଦ୍ଧା କରାଯାଇଥିବା ସଭ୍ୟ ସଂଖ୍ୟା ଭିତ୍ତିରେ ଏଇ ଯାଞ୍ଚ ପ୍ରକ୍ରିୟା କରାଯିବ, ଯେଉଁ କେନ୍ଦ୍ରୀୟ ଶ୍ରମିକ ସଂଗଠନ ଅନ୍ୟୂନ ୮ଟି ପ୍ରଦେଶ, ୮ଲକ୍ଷ ସଭ୍ୟ ଓ ୮ଟି ଶିଳ୍ପରେ କାର୍ଯ୍ୟ କରୁଥିବେ ସେମାନଙ୍କୁ କେନ୍ଦ୍ରୀୟ ଶ୍ରମିକ ସଙ୍ଗଠନ ମାନ୍ୟତା ପ୍ରଦାନ କରାଯିବ ଏବଂ ସେମାନଙ୍କର ମନୋନୀତ ପ୍ରତିନିଧିମାନେ ବିଭିନ୍ନ କେନ୍ଦ୍ରୀୟଶ୍ରମ କମିଟୀରେ ପ୍ରତିନିଧିତ୍ୱ କରିବେ ପରିତାପର କଥା, ଆମଦେଶରେ ସଙ୍ଗଠିତ ଶ୍ରମିକ ଆନ୍ଦୋଳନ ୯୨ ବର୍ଷ ଅତିକ୍ରାନ୍ତ କରିଥିଲେ ମଧ୍ୟ ଏଯାବତ ସମସ୍ତ ଶ୍ରମିକ 'ଟ୍ରେଡ୍‌ୟୁନିୟନ ସଭ୍ୟଭୁକ୍ତ' ହୋଇନାହାଁନ୍ତି । ଏହା ମୋଟ ଶ୍ରମିକ ଶକ୍ତିର ଶତକଡା ୬ରୁ ୮ ପ୍ରତିଶତ ମଧ୍ୟରେ ସୀମିତ । ଏହା ଆମଦେଶର ଶ୍ରମିକ ଆନ୍ଦୋଳନର ଚରମ ଦୁର୍ବଳତା କହିଲେ ଅତ୍ୟୁକ୍ତି ହେବନାହିଁ ଏକ ଆକଳନ ଅନୁସାରେ (୨୦୦୯) ଆମଦେଶର ମୋଟ ଶ୍ରମଶକ୍ତି ହେଉଛି ୪୫ କୋଟି । ତନ୍ମଧ୍ୟରୁ ସଙ୍ଗଠିତ କ୍ଷେତ୍ରରେ ୬କୋଟି ଥିଲାବେଳେ ଅସଙ୍ଗଠିତ କ୍ଷେତ୍ରରେ ୩୯କୋଟି ରହିଛନ୍ତି । ସେମାନଙ୍କ ମଧ୍ୟରେ କୃଷି ଶ୍ରମିକ, କେନ୍ଦୁପତ୍ର ଓ ଲଘୁବନଜାତ ସଂଗ୍ରହକାରୀ ଶ୍ରମିକ, ବିଡି କାରିଗର, ନିର୍ମାଣ ଶ୍ରମିକ ଓ ଅନ୍ୟାନ୍ୟ ବୃତ୍ତି, ଧନ୍ଦା ବା ଚାକିରିରେ ନିଯୁକ୍ତ ଶ୍ରମଜୀବୀ ଅନ୍ତର୍ଗତ। ଜାତୀୟ ବିକାଶରେ 'ଶ୍ରମଜୀବୀ'ମାନଙ୍କର ମହାନ ଭୂମିକା ରହିଛି। ସଙ୍ଗଠିତ କ୍ଷେତ୍ରରେ 'ଠିକା ଶ୍ରମିକ'ମାନଙ୍କ ସଂଖ୍ୟା ୨୯ ପ୍ରତିଶତ ବୋଲି ଆକଳନ କରାଯାଇଛି ।

ଶ୍ରମ ଓ ଶ୍ରମିକ ସମ୍ପର୍କିତ ଅନେକ ଆଇନ–କାନୁନ୍ ଆମଦେଶରେ ପ୍ରଣୀତ ହୋଇଛି । ସେଗୁଡିକ ମଧ୍ୟରେ କର୍ମଚାରୀ କ୍ଷତିପୂରଣ ଆଇନ (୧୯୨୩) ଶ୍ରମ ସଂଗଠନ ଆଇନ୍ (୧୯୨୬), ଶିଳ୍ପ–ବିବାଦ ଆଇନ୍(୧୯୪୭), କାରଖାନା ଆଇନ (୧୯୪୮), ସର୍ବନିମ୍ନ ମଜୁରି ପ୍ରଣୟନ ଆଇନ (୧୯୪୮), ଖଣି ଶ୍ରମିକ ଆଇନ୍ (୧୯୫୨), ପ୍ରଭିଡେଣ୍ଟ ଫଣ୍ଡ ଆଇନ (୧୯୫୨), ବୋନସ୍ ପ୍ରଦାନ ଆଇନ (୧୯୬୫), ଗ୍ରାଚ୍ୟୁଇଟ ପ୍ରଦାନ ଆଇନ (୧୯୭୨), ଠିକା ଶ୍ରମିକ ନିୟନ୍ତ୍ରଣ ଓ ବିଲୋପ ଆଇନ୍ (୧୯୭୦), ଅଣସଂଗଠିତ ଶ୍ରମିକଙ୍କ ସାମାଜିକ ସୁରକ୍ଷା ଆଇନ (୨୦୦୮) ପ୍ରମୁଖ ପ୍ରଧାନ ଅଟେ । ଶ୍ରମ ସମ୍ପର୍କିତ ବିଷୟ ଏକ ଯୁଗ୍ମ ବିଷୟ ଅଟେ। ଏଥିରେ ଉଭୟ କେନ୍ଦ୍ର ସରକାର ଓ ରାଜ୍ୟ ସରକାରଙ୍କର ଦାୟିତ୍ୱ ରହିଛି । ଆମ ଓଡ଼ିଶାରେ ଶ୍ରମ ସମ୍ପର୍କିତ ବିଭିନ୍ନ ଯୁଗ୍ମ କମିଟି ଯଥା– ଷ୍ଟେଟ୍ ଇମ୍ପ୍ଲିମେଣ୍ଟସନ୍ ଏଣ୍ଡ ଇଭାଲ୍ୟୁଏସନ୍ କମିଟି, ଶ୍ରମ ପରାମର୍ଶଦାତା ବୋର୍ଡ, ଠିକା ଶ୍ରମିକ ପରାମର୍ଶଦାତା ବୋର୍ଡ, ସର୍ବନିମ୍ନ ମଜୁରି ପ୍ରଣୟନ ପରାମର୍ଶଦାତା ବୋର୍ଡ, ନିର୍ମାଣ ଶ୍ରମିକ କଲ୍ୟାଣ ବୋର୍ଡ ଇତ୍ୟାଦି ଗଠିତ ହୋଇଛି । ଏସବୁ ତ୍ରିପାକ୍ଷିକ କମିଟିରେ ସରକାର, ଶିଳ୍ପମାଲିକ ଓ ଶ୍ରମିକ ପ୍ରତିନିଧିମାନେ ସଭ୍ୟ ଅଛନ୍ତି। ସମ୍ପ୍ରତି ଆମ ରାଜ୍ୟରେ ସର୍ବନିମ୍ନ ମଜୁରି ପରାମର୍ଶଦାତା ବୋର୍ଡ ଏବଂ ନିର୍ମାଣ ଶ୍ରମିକ କଲ୍ୟାଣ ବୋର୍ଡରେ ଯଥାକ୍ରମେ ଦୁଇଜଣ ଶ୍ରମିକ ନେତା– ରାଜେନ୍ଦ୍ର ପ୍ରସାଦ ସିଂହ ଓ ଯୋଗେନ୍ଦ୍ର ନାଥ ତ୍ରିପାଠୀ ଅବସ୍ଥାପିତ । ରାଜ୍ୟରେ ସ୍ଥାପିତ କଳକାରଖାନାରେ ସ୍ଥାନୀୟ ଲୋକଙ୍କ ନିଯୁକ୍ତି କ୍ଷେତ୍ରରେ ଶତକଡା ନବେ ପ୍ରତିଶତ ଅଣକୁଶଳି, ଷାଠିଏ ପ୍ରତିଶତ କୁଶଳି ଓ ତିରିଶ ପ୍ରତିଶତ ଅଣକୁଶଳି ଶ୍ରମିକ ନିଯୁକ୍ତି ପାଇଁ ରାଜ୍ୟ ସରକାରଙ୍କ ନିଷ୍ପତ୍ତି ଅତ୍ୟନ୍ତ ସମୟୋପଯୋଗୀ ଓ ସ୍ୱାଗତଯୋଗ୍ୟ ପଦକ୍ଷେପ । ସେଇଭଳି ପରିବେଶ ସନ୍ତୁଳନ ନିମନ୍ତେ ସମ୍ପୃକ୍ତ କଳକାରଖାନାର ଏକ ତୃତୀୟାଂଶ ଜମିରେ ବୃକ୍ଷରୋପଣ, ଜଳ ସଂରକ୍ଷଣ ନିମନ୍ତେ, ବଡ ବଡ ପୁଷ୍କରିଣୀ ଖନନ' ନିଷ୍ପତ୍ତି ମଧ୍ୟ ଅତ୍ୟନ୍ତ ଉପାଦେୟ ପଦକ୍ଷେପ । ଶ୍ରମିକମାନଙ୍କର ସମସ୍ୟା ସମାଧାନ ନିମନ୍ତେ କରାଯାଇଥିବା ବିଭିନ୍ନ ଶ୍ରମ ଆଇନ କାନୁନ୍‌ର ଯଥାର୍ଥ ନିରୀକ୍ଷଣ ଓ ନିୟନ୍ତ୍ରଣ ଏକାନ୍ତ ଅପରିହାର୍ଯ୍ୟ ।

ସମ୍ପ୍ରତି, ସ୍ୱତନ୍ତ୍ର ଅର୍ଥନୈତିକ ଜୋନ୍ ପ୍ରତିଷ୍ଠା ଏବଂ ବହୁଦେଶୀୟ କମ୍ପାନୀଗୁଡିକରେ ଶ୍ରମିକ ସଙ୍ଗଠନ ଗଠନ କରିବା ଓ ସାମୂହିକ ମୂଲଚାଲ କରିବା ଦିଗରେ ପ୍ରତିବନ୍ଧକ ସୃଷ୍ଟି ହୋଇଛି । ଶ୍ରମିକମାନେ ଶ୍ରମ କାନୁନ୍‌ଗୁଡିକର ସଂଶୋଧନ କରି ଶ୍ରମିକ ସପକ୍ଷ ଧାରା ସଂଯୋଗ କରିବାକୁ ଦାବି ଉପସ୍ଥାପିତ କରୁଥିବାବେଳେ ପୁଞ୍ଜିପତି ଓ ଶିଳ୍ପ ମାଲିକମାନେ ଶ୍ରମିକ ସପକ୍ଷ ଧାରା ଉଚ୍ଛେଦ କରିବାକୁ ପ୍ରୟାସ ଚଳାଇବା ଯୋଗୁଁ ଏକ ବିରୋଧାଭାଷ ପରିସ୍ଥିତି ଉପୁଜିଛି । ଏହାର ସମାଧାନ ଓ ସମନ୍ୱୟ ଏକାନ୍ତ ଆବଶ୍ୟକ । ଏ କ୍ଷେତ୍ରରେ ଆଇଏଲ୍‌ଓ କନ୍‌ଭେନ୍‌ସନ–୮୭ (ସଙ୍ଗଠନ ଗଢିବାର ଅଧିକାର) ଓ କନ୍‌ଭେନ୍‌ସନ୍– ୯୮ (ସାମୂହିକ ସୌଦାବାଜ୍ୟ ଅଧିକାର)କୁ ଭାରତ ସରକାର ଅନୁମୋଦନ କରିବା ଉଚିତ୍ । ''ଆନ୍ତର୍ଜାତୀୟ ସ୍ତରୀୟ ଚିନ୍ତାକର ଏବଂ ଆଞ୍ଚଳିକ ସ୍ତରୀୟ କାର୍ଯ୍ୟକର ।'' ଶ୍ରମିକ ସଂଗଠନମାନଙ୍କୁ ସୁଦୃଢ ଓ ଶ୍ରମିକ ଆନ୍ଦୋଳନକୁ ବଳିଷ୍ଠ କରିବାକୁ ଶ୍ରମିକ ଶିକ୍ଷା, ଚର୍ଚ୍ଚା, ଅଧ୍ୟୟନ ଓ ଗବେଷଣା ଏକାନ୍ତ ପ୍ରୟୋଜନ । ତା'ହେଲେ ଦୁନିଆର ଶ୍ରମିକ ଏକ ହୁଅ– ଏହାଦ୍ୱାରା ମଇ ଦିବସର ଆହ୍ୱାନ ଯଥାର୍ଥରେ ପ୍ରତିପାଦିତ ହୋଇପାରିବ ।

କ୍ୱାର୍ଟର ନଂ– ଇ– ୧୩, ୩/୧, ନ୍ୟୁ ଗଭର୍ଣ୍ଣମେଣ୍ଟ
କଲୋନୀ, ଚନ୍ଦ୍ରଶେଖରପୁର, ଭୁବନେଶ୍ୱର

# ଓଡ଼ିଶାରେ ଶ୍ରମିକଙ୍କ ହିତରେ ଶ୍ରମ ନିର୍ଦ୍ଦେଶାଳୟ

ଡକ୍ଟର ଅଲେଖ ଚନ୍ଦ୍ର ପଢିଆରୀ

''ତୁମେ ଦେଖି ଅଛ ଶିଳାରେ ଭାରତ ରମ୍ୟକଳାର ରୂପ,
ମୁଁ ଦେଖିଛି ତହିଁ କୋଟି କଙ୍କାଳ ଭଗ୍ନ ବୁକୁର ସ୍ତୂପ ।
ମୂଲିଆର ଆଖି ନେଇ,
ମୁଁ ଦେଖିଛି ସେହି ମନ୍ଦିର ରୂପ ବ୍ୟଥାର ଆରତି ଦେଇ ।''

ସଚ୍ଚି ରାଉତରାୟ

ଓଡ଼ିଶାରେ ଆଧୁନିକ ଶ୍ରମିକ ଶ୍ରେଣୀର ଆବିର୍ଭାବ ବହୁ ବିଳମ୍ବରେ ଘଟିଥିବାରୁ ସେମାନେ ଏକ ଶକ୍ତ ଅଗ୍ରଗାମୀ ଶ୍ରେଣୀଭାବେ ସଙ୍ଗଠିତ ହୋଇ ରାଜ୍ୟର ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ଜୀବନରେ ହସ୍ତକ୍ଷେପ କରିବା ଏଯାବତ୍ ସମ୍ଭବ ହୋଇନାହିଁ । ଓଡ଼ିଶାରେ ଶ୍ରମିକ ଆନ୍ଦୋଳନ ଏବେ ମଧ୍ୟ ବହୁ ପଛରେ । ଏହା ସତ୍ତ୍ୱେ ସେମାନଙ୍କର ଶକ୍ତି ଓ ସାମର୍ଥ୍ୟକୁ ଅଣଦେଖା କରିହେବ ନାହିଁ ।

ଓଡ଼ିଶାର ଶ୍ରମିକ ଶ୍ରେଣୀର ଉଦ୍ଭବ ଓ ବର୍ତ୍ତମାନର ସ୍ଥିତି ସମ୍ପର୍କରେ ଆଲୋଚନା କରିବାକୁ ହେଲେ ଶ୍ରେଣୀ ସଂଗ୍ରାମର ତତ୍ତ୍ୱଟିକୁ ଜାଣିବାକୁ ହେବ । ''ପ୍ରତ୍ୟେକ ଐତିହାସିକ ଯୁଗରେ ଯେଉଁ ଆର୍ଥିକ ଉତ୍ପାଦନ ବ୍ୟବସ୍ଥା ଓ ସମାଜ ସଂଗଠନ ଦେଖିବାକୁ ମିଳେ, ତାହା ସେହି ଐତିହାସିକ ଯୁଗରୁ ହିଁ ସମ୍ଭୂତ ଏବଂ ତାହା ହେଉଛି ସେହି ଯୁଗର ରାଜନୈତିକ ଓ ମାନସିକ ଇତିହାସର ଭିତ୍ତି । ତା' ଫଳରେ (ଆଦିମ ଯୌଥ ଭୂ-ମାଲିକର ବିଲୋପ ପରଠାରୁ) ସମସ୍ତ ଇତିହାସ ହେଉଛି ଶ୍ରେଣୀ ସଂଗ୍ରାମର ଇତିହାସ, ଅର୍ଥାତ୍ ଶୋଷିତ ଓ ଶୋଷକ ଶ୍ରେଣୀର ସଂଗ୍ରାମ । ସାମାଜିକ ବିକାଶର ବିଭିନ୍ନ ପର୍ଯ୍ୟାୟରେ ଶାସକ ଓ ଶୋଷିତ ଶ୍ରେଣୀ ସଂଗ୍ରାମ । କିନ୍ତୁ ଆଜି ଏହି ସଂଗ୍ରାମ ଏପରି ଏକ ପର୍ଯ୍ୟାୟରେ ଆସି ଉପନୀତ ହୋଇଛି ଯେତେବେଳେ କି ଶୋଷିତ ନିର୍ଯାତିତ ଶ୍ରେଣୀ (ସର୍ବହରା ଶ୍ରେଣୀ) ସମଗ୍ର ସମାଜକୁ ଶୋଷଣ, ନିର୍ଯାତନା ଓ ଶ୍ରେଣୀ ସଂଗ୍ରାମ କବଳରୁ ମୁକ୍ତ କରିବା ବିନା କଦାପି ଶୋଷକ ଓ ଅତ୍ୟାଚାରୀ ଶ୍ରେଣୀ (ବୁର୍ଜୁଆ ଶ୍ରେଣୀ)ର କବଳରୁ ମୁକ୍ତ କରିପାରିବ ନାହିଁ ।'' ଶ୍ରେଣୀ ସଂଗ୍ରାମର ଏହି ଇତିହାସ ବିବର୍ତ୍ତନର ବହୁ ପର୍ଯ୍ୟାୟ ଭିତର ଦେଇ ଅଗ୍ରସର ହୋଇଚାଲିଛି ଏବଂ ବର୍ତ୍ତମାନ ବିଶ୍ୱୀକରଣ ଅର୍ଥନୀତିରେ ଏହା ନୂତନ ରୂପରେ ଦେଖାଦେଇଛି ।

ପୁଞ୍ଜିର ଉତ୍ପାଦକ ଓ ପୁଞ୍ଜିର ଅଭିବୃଦ୍ଧି ସହିତ ଶ୍ରମିକ ଶ୍ରେଣୀର ଉଦ୍ଭବ, ବିକାଶ ଓ ସଂଗ୍ରାମ ଏକ ନିରବଚ୍ଛିନ୍ନ ପ୍ରକ୍ରିୟା । ୧୯୩୭-୩୮ ମସିହା ବେଳକୁ ଓଡ଼ିଶାରେ ଶିଳ୍ପ କହିଲେ ଶୂନ । ତଥାପି ଗଢି ଉଠିଛି କଟକ ପ୍ରେସ୍ କର୍ମଚାରୀ ସଂଘ, ପୁରୀମେହାରା ୟୁନିୟନ୍ କିନ୍ତୁ ଏହା ଅତି ପ୍ରାଥମିକ ଅର୍ଥନୈତିକ ଟ୍ରେଡ୍ ୟୁନିୟନ କ୍ଷେତ୍ରରେ ସୀମିତ । ଓଡ଼ିଶାର ମୁଖ୍ୟ ଶ୍ରମିକ ଶ୍ରେଣୀ କଲିକତାରେ- ସେଠାରେ ଯେଉଁମାନେ ସଂଗଠନ ମାଧ୍ୟମରେ କାମ କରୁଥିଲେ, ସେମାନଙ୍କ ମଧ୍ୟରୁ କେତେକ ପରବର୍ତ୍ତୀ କାଳରେ ଓଡ଼ିଶାର ଶ୍ରମିକ ଆନ୍ଦୋଳନର ସଂଗଠକ ହୋଇଛନ୍ତି । ୧୯୩୩ ମସିହାରେ ରମ୍ଭା ରେଳଷ୍ଟେସନ ନିକଟରେ ଛତ୍ରପୁରର ଜଣେ ବ୍ୟବସାୟୀ ଏକ ଚାଉଳ କଳ ସ୍ଥାପନ କରିଥିଲେ, ଯେଉଁଠାରେ ୧୮ଜଣ ଶ୍ରମିକ କାର୍ଯ୍ୟ କରୁଥିଲେ । ଜଣେ ମିସ୍ତ୍ରୀ ଓ ଅନ୍ୟ ସମସ୍ତେ ତାଙ୍କର ସହଯୋଗୀ ଶ୍ରମିକ । ମାଲିକ ନିଜେ ତା'ର ପରିଚାଳକ । ସେମାନଙ୍କୁ ମାସକୁ ମଜୁରି ୮ଟଙ୍କାରୁ ୧୨ଟଙ୍କା ଦିଆଯାଉଥିଲା ।

ସୁଜନ ଭଟ୍ଟାଚାର୍ଯ୍ୟ ସୁଦୂର କଲିକତାରୁ ରମ୍ଭା ରେଳଷ୍ଟେସନରେ ତତ୍କାଳୀନ ଷ୍ଟେସନ ମାଷ୍ଟର ଯେ କି ତାଙ୍କ ବନ୍ଧୁଥିଲେ, ତାଙ୍କ ଘରେ ପହଞ୍ଚିଲେ । ସେ ଚାଉଳ କଳ ସମ୍ପର୍କରେ ଜାଣି ସେଠାକାର ଶ୍ରମିକମାନଙ୍କୁ ଅଧିକ ମଜୁରି ଦାବି ପାଇଁ ବୁଝାଇଲେ । ଦୁଇଜଣ ଶ୍ରମିକ ସେମାନଙ୍କର ଗୁହାରୀ ମାଲିକଙ୍କୁ ଜଣାଇବାରୁ ମାଲିକ ସେମାନଙ୍କୁ କାର୍ଯ୍ୟରୁ ଅନ୍ତର କରିଦେଲେ । ଏହା ବିରୋଧରେ ଅନ୍ୟାନ୍ୟ ଶ୍ରମିକମାନେ କାର୍ଯ୍ୟ ବନ୍ଦ କଲେ, ଯାହା ଫଳରେ ମାଲିକ

କ୍ଷୁବ୍ଧ ହୋଇ ଚାଉଳ କଳରେ ତାଲା ପକାଇ ଛତ୍ରପୁର ଚାଲିଗଲେ। ଏହା ୧୯୩୫ ମସିହା ଜାନୁଆରୀ ୨ୟ ସପ୍ତାହର ଘଟଣା। ଚାରିଦିନ କାଳ ଏ ପରିସ୍ଥିତି ରହିବାରୁ ରମ୍ଭା ଗ୍ରାମବାସୀମାନେ ହସ୍ତକ୍ଷେପ କରି ମାଲିକ ମୂର୍ତ୍ତିବାବୁଙ୍କୁ ଡାକି ଆଣିଲେ ଓ ସମସ୍ୟାର ସମାଧାନ ହେଲା । ମିସ୍ତ୍ରୀଙ୍କ ମଜୁରି ମାସିକ ୧୫ଟଙ୍କା ହେଲା, ଅନ୍ୟ ଶ୍ରମିକମାନଙ୍କ ମଜୁରି ମାସିକ ୨ଟଙ୍କା ବଢି ଦଶଟଙ୍କା ହେଲା । ସବୁ ଶ୍ରମିକଙ୍କୁ ଗୋଟିଏ ଗୋଟିଏ ଧୋତି ମିଳିଲା। ସୁଜନବାବୁଙ୍କ ଉପସ୍ଥିତିରେ ଏହି ରାଜିନାମା ସ୍ୱାକ୍ଷରିତ ହେଲା ଏବଂ ଶ୍ରମିକମାନଙ୍କୁ ଚାରିଘଣ୍ଟା ବିଶ୍ରାମ ମିଳିଲା । ଏହି ଚୁକ୍ତିନାମା ଜାନୁଆରୀ ୧୪ ତାରିଖ ମକର ସଂକ୍ରାନ୍ତି ଦିନ ହୋଇଥିବା ଯୋଗୁଁ ୧୯୩୫ ଜାନୁଆରୀ ୧୪ ତାରିଖକୁ ଓଡ଼ିଶାର ଶ୍ରମିକ ଆନ୍ଦୋଳନର ଜନ୍ମତିଥି ଭାବରେ ଗ୍ରହଣ କରାଯାଏ । ରମ୍ଭା ଚାଉଳ କଳ ଶ୍ରମିକ ସଂଘ ଶ୍ରମିକ ସଂଘ, ଆଇନ୍ ୧୯୨୬ ଅନୁସାରେ ମାନ୍ଦ୍ରାଜ ପ୍ରେସିଡେନ୍ସିରେ ରେଜେଷ୍ଟ୍ରିଭୁକ୍ତ ହେଲା ।

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ଏପ୍ରିଲ ୧ ତାରିଖ ୧୯୩୬ ମସିହାରେ । ସ୍ୱାଧୀନତା ପୂର୍ବରୁ ରାଜନୀତିରେ ଶ୍ରମିକମାନଙ୍କର ଏକ ବିଶେଷ ଭୂମିକା ଥିଲା । ପ୍ରଥମେ ୧୯୧୯ ମସିହାରେ ସଂସ୍କାର ଆଇନ ଶ୍ରମିକ ପ୍ରତିନିଧିଙ୍କୁ ସଂସଦକୁ ମନୋନୀତ କରିବା ସମ୍ପର୍କରେ ଧାରା ୭୨ରେ ଉଲ୍ଲେଖ ଥିଲା । ୧୯୩୫ ମସିହାରେ ପ୍ରଣୀତ ଭାରତ ସରକାରଙ୍କ ଆଇନ ଅନୁସାରେ କେନ୍ଦ୍ରର ଫେଡେରାଲ ଆସେମ୍ବ୍ଲି ବା ସଂସଦକୁ ୧୦ଜଣ ଓ ପ୍ରାଦେଶିକ ସଂସଦକୁ ୩୮ଜଣ ଶ୍ରମିକ ପ୍ରତିନିଧି ନିର୍ବାଚିତ ହେବା ନିମନ୍ତେ ବ୍ୟବସ୍ଥା କରାଗଲା। ୧୯୩୭ରେ ପ୍ୟାରୀଶଙ୍କର ରାୟ କଂଗ୍ରେସ ପକ୍ଷରୁ ଶ୍ରମିକ ନିର୍ବାଚନ ମଣ୍ଡଳୀରୁ ବିଜୟୀ ହୋଇଥିବା ବେଳେ ୧୯୪୬ରେ କମ୍ୟୁନିଷ୍ଟ ଦଳପକ୍ଷରୁ ବୈଦ୍ୟନାଥ ରଥ ନିର୍ବାଚିତ ହୋଇଥିଲେ ।

୧୯୪୪ ଅଗଷ୍ଟ ଠାରୁ ୧୯୪୬ ଶେଷ ସୁଦ୍ଧା ଓଡ଼ିଶାରେ ସର୍ବମୋଟ ୨୯ଟି ଶ୍ରମିକ ସଂଗଠନକୁ ରେଜିଷ୍ଟ୍ରିଭୁକ୍ତ କରାଯାଇଥିଲା। ତନ୍ମଧ୍ୟରୁ କଟକ ଜିଲ୍ଲାରେ ସର୍ବମୋଟ ୧୯ଟି, ସମ୍ବଲପୁର ଜିଲ୍ଲାରେ ୪ଟି, ପୁରୀ ଜିଲ୍ଲାରେ ୨ଟି ଓ ଗଞ୍ଜାମ ଜିଲ୍ଲାରେ ୪ଟି ଶ୍ରମିକ ସଂଗଠନ ରେଜିଷ୍ଟ୍ରିଭୁକ୍ତ ହୋଇଥିଲା। ଶ୍ରମିକ ସଂଗଠନଗୁଡିକ ମୁଖ୍ୟତଃ କୋଇଲା ଖଣି, ବ୍ରଜରାଜ ନଗରର ବିଡି କାରଖାନା (କଟକ ଓ ସମ୍ବଲପୁର), କାଚ କାରଖାନା (ବାରଙ୍ଗ ଓ କଟକ), ମୁଦ୍ରଣାଳୟ, (ସରକାରୀ ମୁଦ୍ରଣାଳୟ, କଟକ) ମୁନିସିପାଲିଟି, (ସମ୍ବଲପୁର ଓ କଟକ) ମୋଟର ପରିବହନ (ବ୍ରହ୍ମପୁର ଓ କଟକ), ପ୍ରାଥମିକ ଶିକ୍ଷାନୁଷ୍ଠାନ (କଟକ, ପୁରୀ ଓ ଗଞ୍ଜାମ ଜିଲ୍ଲା), ଓରିଏଣ୍ଟ କାଗଜ କଳ (ବ୍ରଜରାଜନଗର), କଟକ ଇଲେକ୍ଟ୍ରିସିଟି କମ୍ପାନୀ ଇତ୍ୟାଦି ।

୧୯୪୭ ମସିହାରେ ସର୍ବମୋଟ ୧୯ଟି ଶ୍ରମିକ ସଙ୍ଗଠନ ୧୯୨୬ ଆଇନ୍ ଅନୁସାରେ ପଞ୍ଜିକୃତ ହୋଇଥିଲା । ଏଥିମଧ୍ୟରୁ ୮ଟି ଶ୍ରମିକମାନଙ୍କ ଦ୍ୱାରା, ୮ଟି କଂଗ୍ରେସ ନେତାମାନଙ୍କ ଦ୍ୱାରା ଓ ଅନ୍ୟ ତିନିଗୋଟି ସମାଜସେବୀମାନଙ୍କ ଦ୍ୱାରା ଗଠିତ ହୋଇଥିଲା । ଏ ପ୍ରକ୍ରିୟା ଅଦ୍ୟାବଧି ପ୍ରାୟ ସେହିପରି । କେତେକ ଟ୍ରେଡ୍ ୟୁନିୟନ କେବଳ ଶ୍ରମିକମାନଙ୍କ ଦ୍ୱାରା ଗଠନ କରାଯାଇଥିବା ବେଳେ, ଅନ୍ୟ କେତେକ ଟ୍ରେଡ୍ ୟୁନିୟନର ନେତୃତ୍ୱ ବିଭିନ୍ନ ରାଜନୈତିକ ଦଳ ଓ ସ୍ୱେଚ୍ଛାସେବୀ ସଂସ୍ଥା ଉପରେ ନ୍ୟସ୍ତ ।

୧୯୫୩ ମସିହାରେ ଶ୍ରମ ନିର୍ଦ୍ଦେଶାଳୟ ଓ ଶ୍ରମ କମିଶନର ଏକ ସ୍ୱତନ୍ତ୍ର ନିର୍ଦ୍ଦେଶାଳୟ ରୂପେ ସଙ୍ଗଠିତ ହେଲା । ଏହା ଫଳରେ ରେଜିଷ୍ଟ୍ରିଭୁକ୍ତ ଶ୍ରମିକ ସଙ୍ଗଠନଗୁଡିକର ସ୍ଥିତି ସମ୍ପର୍କରେ ସମୀକ୍ଷା କରାଯାଉଛି ଏବଂ ଶ୍ରମ ଆଇନ କଡାକଡି ଲାଗୁ କରାଯାଇ ଶିଳ୍ପ ସମ୍ପର୍କରେ ଭାରସାମ୍ୟ ରକ୍ଷା କରାଯାଉଛି । ଏହା ଫଳରେ ଶ୍ରମିକମାନେ ଆଇନଗତ ଅଧିକାରକୁ ସାବ୍ୟସ୍ତ କରିବାର ମାର୍ଗ ସୁଗମ ହୋଇଛି । ୧୯୫୧ ମସିହାଠାରୁ ଭାରତରେ ପଞ୍ଚବାର୍ଷିକ ଯୋଜନାର ସୂତ୍ରପାତ ହେଲା । ୧୯୫୧ରୁ ୧୯୬୭ ମଧ୍ୟରେ ଓଡ଼ିଶାରେ ଅନେକଗୁଡିଏ କାରଖାନା ସରକାରୀ ଉଦ୍ୟମରେ ପ୍ରତିଷ୍ଠା ହେଲା । ତନ୍ମଧ୍ୟରୁ ହୀରାକୁଦ ଜଳ ବିଦ୍ୟୁତ୍ ପ୍ରକଳ୍ପ, ମାଛକୁଣ୍ଡ ଜଳ ବିଦ୍ୟୁତ୍ ପ୍ରକଳ୍ପ, ତାଳଚେର ତାପଜ ବିଦ୍ୟୁତ୍ ପ୍ରକଳ୍ପ, ରାଉରକେଲା ଇସ୍ପାତ କାରଖାନା, ଓଡ଼ିଶା ସଡ଼କ ପରିବହନ କମ୍ପାନୀ, ରାଜ୍ୟ ସକ୍ଷକ ପରିବହନ ସଂସ୍ଥା, ୧୯୬୨ରେ ପ୍ରତିଷ୍ଠିତ ଓଡ଼ିଶା ଶିଳ୍ପ ନିଗମ ଗୋଟିଏ ସିମେଣ୍ଟ କାରଖାନା ଓ ଗୋଟିଏ ଇସ୍ପାତ ପ୍ରକଳ୍ପ ସମେତ ୫ଟି ବୃହତ ଶିଳ୍ପ ପ୍ରତିଷ୍ଠା ଅନ୍ୟତମ । ଏହା ଫଳରେ ଶ୍ରମିକ ସଂଗଠନର ପଞ୍ଜୀକରଣରେ ବୃଦ୍ଧି ପାଇଲା । ଉଭୟ ସରକାରୀ ଓ ବେସରକାରୀ ଶିଳ୍ପ ସଂସ୍ଥାରେ ୟୁନିୟନମାନ ଗଠନ କରାଯାଇ ୧୯୬୭ ମସିହା ଶେଷକୁ ୯୧୨ଟି ୟୁନିୟନର ସଭ୍ୟ ସଂଖ୍ୟା ୬୯,୭୫୨ ହୋଇଥିଲା । ୨୦୧୦ ମସିହା ଶେଷ ସୁଦ୍ଧା ଓଡ଼ିଶାରେ ୨୧୦୧ ଗୋଟି ପଞ୍ଜିକୃତ ୟୁନିୟନ ଥିବାବେଳେ ଏହାର ସଭ୍ୟସଂଖ୍ୟା ହେଲା ୩୫,୪୧,୭୨୫ ।

ରାଜନୈତିକ ଆଦର୍ଶର ଭିନ୍ନତା ହେତୁ ଟ୍ରେଡ୍ ୟୁନିୟନମାନେ ରାଷ୍ଟ୍ରୀୟ ସ୍ତରରେ ଭାଗ ଭାଗ ହୋଇଯିବା ଫଳରେ ଯେଉଁ କେତେକ ଟ୍ରେଡ ୟୁନିୟନ ରାଷ୍ଟ୍ରୀୟ କ୍ଷେତ୍ରରେ କାର୍ଯ୍ୟ କରୁଛନ୍ତି ସେମାନେ ହେଲେ– ଆଇଏନଟିୟୁସି, ଏଆଇଟିୟୁସି, ଏଚ୍ଏମ୍ଏସ୍, ସିଆଇଟିୟୁ, ଏଆଇଟିୟୁସି, ଏଆଇୟୁଟିୟୁସି, ୟୁଟିୟୁସି, ଏଆଇସିସିଟିୟୁ, ଏଲପି ଏଫଓସେୱା । ଓଡ଼ିଶାରେ ଉପରୋକ୍ତ କେନ୍ଦ୍ରୀୟ ଟ୍ରେଡ୍

ୟୁନିୟନମାନଙ୍କ ମଧ୍ୟରୁ ଆଇଏନ୍‌ଟିୟୁସି, ଏଆଇୟୁଟିୟୁସି, ଏଚଏମ୍‌ଏସ୍, ବିଏମ୍‌ଏସ୍, ସିଆଇଟିୟୁ,ଏଆଇଟିୟୁସି, ଏନ୍‌ଏଫ୍‌ଆଇଟିୟୁ, ଏଆଇସିସିଟିୟୁ ଓ ଅନ୍ୟାନ୍ୟ ସ୍ୱାଧୀନ ଟ୍ରେଡ୍ ୟୁନିୟନ ରହିଛନ୍ତି । ବିଭିନ୍ନ ଶିଳ୍ପକ୍ଷେତ୍ରରେ ଓ ଅଣସଂଗଠିତ କ୍ଷେତ୍ରରେ ଶ୍ରମିକ ସଂଗଠନମାନେ ଟ୍ରେଡ୍ ୟୁନିୟନ୍ ପଞ୍ଜିକରଣ କରୁଛନ୍ତି । ଶ୍ରମ ନିର୍ଦ୍ଦେଶାଳୟ ପକ୍ଷରୁ ସମୁଦାୟ ୨୫ଗୋଟି ଆଇନକୁ ଲାଗୁ କରାଯାଇଛି । ବିଭିନ୍ନ ଶ୍ରମ ଆଇନ୍ ବିଶେଷ କରି ସର୍ବନିମ୍ନ ମଜୁରି ଆଇନ୍, ମଜୁରି ପ୍ରଦାନ ଆଇନ, ଠିକା ଶ୍ରମିକ (ନିୟନ୍ତ୍ରଣ ଉଚ୍ଛେଦ ଆଇନ, ଓଡ଼ିଶା ଦୋକାନ ବଜାର ଓ ବାଣିଜ୍ୟ) ପ୍ରତିଷ୍ଠାନ ଆଇନ, ଆନ୍ତଃ ରାଜ୍ୟ ପ୍ରବାସିକ ଶ୍ରମିକ (ନିଯୁକ୍ତି ନିୟନ୍ତ୍ରଣ ଓ ସେବାସର୍ତ୍ତ) ଆଇନ୍, ମୋଟର ପରିବହନ ଶ୍ରମିକ ଆଇନ, ଶିଶୁ ଶ୍ରମିକ (ଉଚ୍ଛେଦ ଓ ନିୟନ୍ତ୍ରଣ) ଆଇନ୍ ଇତ୍ୟାଦିକୁ କଡାକଡି ଲାଗୁ କରାଯିବାକୁ ଚେଷ୍ଟା କରାଯାଇଛି । ଶ୍ରମ ଆଇନ ସମ୍ପର୍କରେ ଉପଦେଶ ଦେବା ପାଇଁ ବିଭିନ୍ନ ତ୍ରିପାକ୍ଷିକ ଉପଦେଷ୍ଟା କମିଟି ଗଠନ କରାଯାଇଛି । ଓଡ଼ିଶାରେ ଜଗତୀକରଣର ପ୍ରଭାବ, ଶ୍ରମ ଆଇନର ମନ୍ଥର ଓ କ୍ରିୟାହୀନ ଧାରା, ଶ୍ରମ ବିଭାଗରେ ଲୋକଶକ୍ତିର ଅଭାବ ଯୋଗୁଁ ଶ୍ରମିକମାନଙ୍କୁ ଯେତେଶୀଘ୍ର ସୁଫଳ ମିଳିବା କଥା ତାହା ହୋଇପାରୁନି । ଯଦିଓ ଶ୍ରମ ନିର୍ଦ୍ଦେଶାଳୟ ଶ୍ରମ ଆଇନ୍ ଖିଲାପକାରୀ ମାଲିକମାନଙ୍କ ଉପରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଚେଷ୍ଟା କରୁଛି । ରାଜ୍ୟରେ ସର୍ବନିମ୍ନ ମଜୁରି ଲାଗୁ ହେବା ପାଇଁ ୮୪ଟି ନିଯୁକ୍ତି ପ୍ରତିଷ୍ଠା ରହିଛି । ସର୍ବନିମ୍ନ ମଜୁରି ବୃଦ୍ଧି ପାଇଁ ପଦକ୍ଷେପ ଗ୍ରହଣ କରାଯାଉଛି। ସର୍ବନିମ୍ନ ମଜୁରି ଯେଉଁ ଯେଉଁ ପ୍ରତିଷ୍ଠାନ ଲାଗୁ କରୁନାହାନ୍ତି, ସେମାନଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉଛି । ୨୦୦୯ ମସିହାରେ ସମୁଦାୟ ୭୦୫ଗୋଟି କେଶ୍ ଦାୟର କରାଯାଇଛି । ସର୍ବନିମ୍ନ ମଜୁରିର ସଂଶୋଧନ ପାଇଁ ପଦକ୍ଷେପ ନିଆଯାଇ ସରକାରୀଭାବେ ବିଜ୍ଞପ୍ତି ମାଧ୍ୟମରେ ଆପତ୍ତି ଅଭିଯୋଗ ଶୁଣାଣି ଚାଲୁରହିଛି । ନିର୍ମାଣରେ କାର୍ଯ୍ୟ କରୁଥିବା ନିର୍ମାଣ ଶ୍ରମିକମାନଙ୍କର ସାମାଜିକ ସୁରକ୍ଷା ପାଇଁ ନିର୍ମାଣବୋର୍ଡ ଗଠନ କରାଯାଇଛି ଏବଂ ନିର୍ମାଣ ଶ୍ରମିକମାନଙ୍କୁ ପରିଚୟପତ୍ର ପ୍ରଦାନ କରାଯାଇଛି। ୨୦୧୧ ମସିହା ଶେଷସୁଦ୍ଧା ପ୍ରାୟ ୧ଲକ୍ଷରୁ ଊର୍ଦ୍ଧ୍ୱ ନିର୍ମାଣ ଶ୍ରମିକ ଏହି ପରିଚୟପତ୍ର ପାଇଛନ୍ତି । ଏତଦ୍‌ବ୍ୟତୀତ ଯେଉଁମାନେ ଅନ୍ୟ ରାଜ୍ୟକୁ ଶ୍ରମିକ ଭାବରେ କାର୍ଯ୍ୟ କରିବାକୁ ଯାଉଛନ୍ତି ଏବଂ ବିଭିନ୍ନ ଶୋଷଣର ଶୀକାର ହେଉଛନ୍ତି, ସେଥିପ୍ରତି ଧ୍ୟାନ ଦିଆଯାଇଛି । ଏହିପରି ୮୮୪ ଜଣ ଶ୍ରମିକମାନଙ୍କୁ ୨୦୧୧ ମସିହାରେ ଉଦ୍ଧାର କରାଯାଇଛି । ଦାରିଦ୍ର୍ୟର ସୀମାରେଖା ତଳେ ଥିବା ଗରିବ ଜନସାଧାରଣଙ୍କୁ ସ୍ୱାସ୍ଥ୍ୟସେବା ଯୋଗାଇଦେବା ପାଇଁ ରାଷ୍ଟ୍ରୀୟ ସ୍ୱାସ୍ଥ୍ୟବୀମା ଯୋଜନା କାର୍ଯ୍ୟକାରୀ ହେଉଛି । ୨୦୧୨ ଏପ୍ରିଲ ସୁଦ୍ଧା ରାଜ୍ୟରେ ୧୧୪ ଲକ୍ଷ ପରିବାରକୁ ଏଥିରେ ପଞ୍ଜିକୃତ କରାଯାଇଛି । ଅଦ୍ୟାବଧି ୩୦କୋଟି ୧୬ଲକ୍ଷ ଟଙ୍କା ଏହି କ୍ଷେତ୍ରରେ ଖର୍ଚ୍ଚ ହୋଇଛି। ଶିଶୁ ଶ୍ରମିକ ସର୍ଭେ କାର୍ଯ୍ୟ କରାଯାଇ ସେମାନଙ୍କୁ ଥଇଥାନ କରିବାର ପଦକ୍ଷେପ ଜାରି ରହିଛି । ୨୪ଗୋଟି ଜିଲ୍ଲାରେ ଶିଶୁ ଶ୍ରମିକ ପ୍ରକଳ୍ପ କାର୍ଯ୍ୟକାରୀ ହେଉଛି । ବର୍ତ୍ତମାନ ସୁଦ୍ଧା ୧୭ଟି ଜିଲ୍ଲାରେ ନୂତନ ସର୍ଭେ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି ।

ଓଡ଼ିଶାରେ ବିଗତ ଦଶବର୍ଷରେ ବହୁ ବୃହତ୍ତ, ମଧ୍ୟମ ଓ କ୍ଷୁଦ୍ର ଶିଳ୍ପ ଗଢି ଉଠିଛି ଏବଂ ଯାହାଫଳରେ ଅନେକ ସମୟରେ ଶ୍ରମିକ ଅଶାନ୍ତି ପରିଲକ୍ଷିତ ହେଉଛି । ଶ୍ରମିକ ସଂଗଠନମାନେ କେତେକ ସ୍ଥଳରେ ହିଂସା ଆଚରଣ କରୁଛନ୍ତି । ଶିଳ୍ପ କ୍ଷେତ୍ରରେ ଉତ୍ପନ୍ନ ହେଉଥିବା ବିବାଦକୁ ମାଲିକ ଓ ଶ୍ରମିକ ମଧ୍ୟରେ ଆପୋଷ ସମାଧାନ କରିବାକୁ ଶ୍ରମ ନିର୍ଦ୍ଦେଶାଳୟ ପ୍ରଚେଷ୍ଟା ଜାରି ରହିଛି । ଓଡ଼ିଶାରେ ଶ୍ରମିକ ଶ୍ରେଣୀର ନେତୃତ୍ୱ ମୁଖ୍ୟତଃ ରାଜନୈତିକ ଦଳମାନଙ୍କର ନେତୃସ୍ଥାନୀୟ ବ୍ୟକ୍ତିବିଶେଷ ନେଉଛନ୍ତି । ସଙ୍ଗଠିତ ଓ ଅସଙ୍ଗଠିତ କ୍ଷେତ୍ରରେ ଶ୍ରମିକମାନେ ନିଜର ଅଧିକାରକୁ ଜାହିର କରିବା ପାଇଁ ପଞ୍ଜିକୃତ ହେଉଛନ୍ତି ଏବଂ ଆନ୍ଦୋଳନ ମଧ୍ୟ କରୁଛନ୍ତି । ବହୁ ସମୟରେ ଶ୍ରମିକ ସଙ୍ଗଠକମାନେ ଆଲୋଚନାକୁ ଅଗ୍ରାଧିକାର ନଦେଇ କୋର୍ଟ କଚେରୀର ଆଶ୍ରୟ ନେଉଥିବା ଫଳରେ ସେମାନଙ୍କର ଦାବି ହାସଲରେ ବିଳମ୍ବ ହେଉଛି । ଶ୍ରମ ନିର୍ଦ୍ଦେଶାଳୟର ଭୂମିକା ଗୌଣ ହୋଇଯାଉଛି । ଅନେକ ଶ୍ରମିକ ସଙ୍ଗଠନ ଆଲୋଚନା ମାଧ୍ୟମରେ ବହୁ ଦାବି ହାସଲ କରିବାକୁ ସକ୍ଷମ ହୋଇଛନ୍ତି ।

ଆନ୍ତର୍ଜାତୀୟ ଶ୍ରମିକ ଦିବସ ୮ଘଣ୍ଟା କାମର ଦାବିନେଇ ଶ୍ରମିକ ଶ୍ରେଣୀର ସଂଗ୍ରାମରୁ ଜନ୍ମ । ଆଜି ଶ୍ରମିକ ଶ୍ରେଣୀ ଆଗରେ ଅନେକ ଆଇନ ସଂସଦ ଦ୍ୱାରା ପ୍ରସ୍ତୁତ ହୋଇଛି । ଶୋଷଣକୁ ପ୍ରତିହତ କରିବାକୁ ହେଲେ ଶ୍ରମିକ ଶ୍ରେଣୀକୁ ପ୍ରଚଳିତ ଆଇନ୍‌କୁ ଲାଗୁ କରିବା ପାଇଁ ଏବଂ ନୂତନ ଆଇନ୍ ଗଠନ ପାଇଁ ସଚେତନ ହେବାକୁ ହେବ । ଓଡ଼ିଶାର ଶ୍ରମ ନିର୍ଦ୍ଦେଶାଳୟ ଏ ଦିଗରେ ପଦକ୍ଷେପ ନେଇ ଶ୍ରମିକମାନଙ୍କୁ ସେମାନଙ୍କର ନ୍ୟାୟପୂର୍ଣ୍ଣ ନ୍ୟାର୍ଯ୍ୟ ଦାବି ଦେବା ସହିତ ଶାଣିତ ଓ ଶକ୍ତିଶାଳୀ କରିବାକୁ ସତତ ଯତ୍ନଶୀଳ ଏବଂ ଶ୍ରମିକମାନଙ୍କ ପାଇଁ ସଦା କାର୍ଯ୍ୟରତ ।

ଶ୍ରମ ଆୟୁକ୍ତଙ୍କ କାର୍ଯ୍ୟାଳୟ,
ଖାରବେଳ ନଗର, ଭୁବନେଶ୍ୱର

# ଭାରତୀୟ ସଂସ୍କୃତି ଓ ଓଡ଼ିଶା ଇତିହାସରେ ମହାକବି ଜୟଦେବ

ଡକ୍ଟର ଅଜିତ୍ କୁମାର ତ୍ରିପାଠୀ

କଳିଙ୍ଗରେ ଅପୂର୍ବ ନଟବଂଶ ନାମରେ ଏକ ନୃତ୍ୟ ବିଶାରଦ ଜାତି ଖ୍ରୀ. ସପ୍ତମ ଶତାବ୍ଦୀରେ ବା ତା' ପୂର୍ବରୁ ସୃଷ୍ଟି ହୋଇଥିଲା, ଯାହା ୬୮୧ଖ୍ରୀ.ରେ, ୬୮୨ ଖ୍ରୀ.ରେ ଏବଂ ୬୯୦ ଖ୍ରୀ.ରେ ପ୍ରଦତ୍ତ ତିନୋଟି ତାମ୍ର ଶାସନରୁ ଜଣାଯାଏ । ଏହି ନଟବଂଶକୁ ପରବର୍ତ୍ତୀ ସମୟରେ ସାନି ସମ୍ପ୍ରଦାୟ କୁହାଯାଉଥିଲା । ଜୟଦେବଙ୍କ ରଚିତ ଗୀତଗୋବିନ୍ଦରେ କଳିଙ୍ଗ ସଂଗୀତର ଅଧିକାଂଶ ରାଗ ବ୍ୟବହୃତ ହୋଇଛି ଏବଂ ଏହା ଏକ ଲଳିତ ପଦାବଳୀଯୁକ୍ତ ମହାନ ଗୀତିନାଟ୍ୟ ତଥା ଦୃଶ୍ୟକାବ୍ୟରେ ପରିଣତ ହୋଇଛି । ଗୀତଗୋବିନ୍ଦ ସଂଗୀତ ଓ ନୃତ୍ୟ ଭିତ୍ତିକ । ଏହା ଏକ ରାଧାକୃଷ୍ଣ ଭକ୍ତି ବିଷୟକ ଲୀଳା ତଥା ନୃତ୍ୟ ନାଟିକା । ସେହି ସଂଗୀତକୁ କଳିଙ୍ଗର ଦେବଗଣିକାମାନେ ଶ୍ରୀକ୍ଷେତ୍ରକୁ ସମ୍ରାଟ ଚୋଡଗଙ୍ଗଦେବଙ୍କ ନିମନ୍ତ୍ରଣକ୍ରମେ ଆସି ଉତ୍କଳରେ ପ୍ରଚଳିତ କରିଥିଲେ ।

ଉତ୍କଳରେ ସୋମବଂଶୀୟ ରାଜାମାନଙ୍କ ସମୟରେ ନିର୍ମିତ ହୋଇଥିବା କେତେକ ମନ୍ଦିରରେ 'ଦାରିକା' ଓ 'ବେଶ୍ୟା'ମାନେ ନୃତ୍ୟ ପରିବେଷଣ ପାଇଁ ନିଯୁକ୍ତ ହୋଇଥିଲେ । ଉଦ୍ୟୋତ କେଶରୀଙ୍କ ରାଜତ୍ୱର ଅଷ୍ଟାଦଶ ବର୍ଷରେ ନିର୍ମିତ ହୋଇଥିବା ବ୍ରହ୍ମେଶ୍ୱର ମନ୍ଦିରର ଶିଳାଲେଖରୁ ଜଣାଯାଏ ଯେ ଉଦ୍ୟୋତ କେଶରୀଙ୍କ ମାତା ତଥା ଯଯାତିଙ୍କ ରାଣୀ କୋଳାବତୀ ଦେବୀ ତିନିଜଣ ରତ୍ନାଳଙ୍କାର ଭୂଷିତା ସ୍ୱାସ୍ଥ୍ୟବତୀ ଅପ୍ସରାଙ୍କ ଭଳି ସୁନ୍ଦରୀ ଦାରିକାଙ୍କୁ ନୃତ୍ୟ ସଂଗୀତ ପରିଚାଳନା ଓ ଆୟୋଜନ ଦାୟିତ୍ୱରେ ବ୍ରହ୍ମେଶ୍ୱର ମନ୍ଦିରରେ ନିଯୁକ୍ତି ଦେଇଥିଲେ ।

ଚୋଡଗଙ୍ଗଦେବ କିନ୍ତୁ ଏ ପ୍ରଚଳିତ ପ୍ରଥାରେ ପରିବର୍ତ୍ତନ ଆଣିଲେ । ସେ ଶ୍ରୀମନ୍ଦିରରେ ବାରବନିତା ଓ ଦାରିକାମାନଙ୍କୁ ନିଯୁକ୍ତ ନକରି ସାନି ସମ୍ପ୍ରଦାୟର କେତେକ ପରିବାରଙ୍କୁ ଶ୍ରୀକୂର୍ମପାଟକରୁ ଅଣାଇ ପୁରୀଠାରେ ସେମାନଙ୍କ ପାଇଁ ସ୍ଥାୟୀ ବ୍ୟବସ୍ଥା କରିଥିଲେ । କାମାର୍ଣ୍ଣବଦେବଙ୍କ ଅଭିଷେକ ସମୟରେ କୂର୍ମପାଟକରେ ଥିବା ସଂଗୀତ ଓ ଶାସ୍ତ୍ରୀୟ ନୃତ୍ୟ ବିଦ୍ୟାଳୟରୁ ନର୍ତ୍ତକ ଓ ନୃତ୍ୟାଙ୍ଗନାମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଶ୍ରୀମନ୍ଦିରରେ ସେମାନେ ଅଭିଷେକ ଉତ୍ସବରେ ନୃତ୍ୟନାଟିକା ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରିବା ପାଇଁ ଆସିଥିଲେ । ସେହି ଗୁଡିସାନିମାନଙ୍କୁ ଦେବଗଣିକା ମଧ୍ୟ କୁହାଯାଉଥିଲା । ସେମାନେ କିନ୍ତୁ 'ଦାରିକା'ଙ୍କ ପରି ବାରବନିତା ବା ବେଶ୍ୟା ନଥିଲେ । ସାନି ସମ୍ପ୍ରଦାୟର ଭାଇ ଭଉଣୀ ସମସ୍ତେ ଏକାଠି ମିଶି ଦେବମନ୍ଦିରରେ ନୃତ୍ୟ ସଙ୍ଗୀତ ପରିଚାଳନା କରୁଥିଲେ । ଚୋଡଗଙ୍ଗଦେବ ଶ୍ରୀମନ୍ଦିରରେ ଓଡ଼ିଆ କିମ୍ବା ତେଲେଙ୍ଗୀ ଭାଷାରେ ସଙ୍ଗୀତ ପରିବେଷଣ ନ କରାଇ ସଂସ୍କୃତ ଭାଷାରେ ସଙ୍ଗୀତ ଓ ଭଜନ ପରିବେଷଣର ଆଦେଶ ଦେଇଥିଲେ । ଚୋଡଗଙ୍ଗଦେବ ନିଜ ରାଜ ଦରବାରରେ ମଧ୍ୟ ପ୍ରାକୃତ ଭାଷା ବଦଳରେ ସଂସ୍କୃତ ଭାଷା ଚଳାଇଥିଲେ ।

ଆଜିର ନୃସିଂହ ମନ୍ଦିର ପ୍ରଥମେ ଜଗନ୍ନାଥ ମନ୍ଦିର ଥିଲା, ସେଥିରେ ଚୋଡଗଙ୍ଗଦେବ ତିନି ମୂର୍ତ୍ତିଙ୍କୁ ସ୍ଥାପିତ କରାଇଥିଲେ । ସେହି ମନ୍ଦିର ସମ୍ମୁଖରେ ନାଟ୍ୟଶାଳା ନଥିଲା । ତେଣୁ ଚୋଡଗଙ୍ଗଦେବ ସେଠାରେ ଗୋଟିଏ ଅସ୍ଥାୟୀ ନାଟମଣ୍ଡପ ତିଆରି କରାଇଲେ । ଆଜିର ନୃସିଂହ ମନ୍ଦିର ସମ୍ମୁଖରେ ଯେଉଁ ଅସ୍ଥାୟୀ ନୃତ୍ୟମଣ୍ଡପ ହୋଇଥିଲା, ସେଠାରେ ଆଜି ଆଧୁନିକ ମୁକ୍ତିମଣ୍ଡପ ନିର୍ମିତ ହୋଇଛି ।

ଗଙ୍ଗ ରାଜତ୍ୱ ବେଳେ ଦେଶ ବିଦେଶରୁ ଛାତ୍ରଛାତ୍ରୀମାନେ କୂର୍ମପାଟକର ବିଷ୍ଣୁମନ୍ଦିର ଓ ଶ୍ରୀକୂର୍ମେଶ୍ୱରଙ୍କ ମନ୍ଦିରରେ ରହି ଧର୍ମଶାସ୍ତ୍ର, ଦର୍ଶନଶାସ୍ତ୍ର ଓ ସଂସ୍କୃତ ସାହିତ୍ୟର ଶିକ୍ଷା ନେଉଥିଲେ । ସେମାନଙ୍କ ମଧ୍ୟରେ ଜୟଦେବ ଜଣେ ଛାତ୍ର ଥିଲେ । ସଂସ୍କୃତ

ସାହିତ୍ୟ, ଶାସ୍ତ୍ରୀୟ ସଙ୍ଗୀତ ଓ ନୃତ୍ୟ ଶିକ୍ଷା କରି ରାଧାକୃଷ୍ଣଙ୍କ ଲୀଳା ଓ ଶୃଙ୍ଗାର ରସକୁ ନେଇ ସେ ନୃତ୍ୟ ନାଟିକା ରଚନା ଓ ସଂଯୋଜନା କରୁଥିଲେ । ବୈଦିକ ବ୍ରାହ୍ମଣ କୁଳରେ ଜନ୍ମ ନେଇ ସେ ସାହିତ୍ୟ ଓ ସଙ୍ଗୀତରେ ସୁନାମ କରିଥିଲେ ଏବଂ ଶ୍ରୀକୃଷ୍ଣ ଭକ୍ତିରେ ନିଜକୁ ଉତ୍ସର୍ଗୀକୃତ କରିଥିବାରୁ ସେ 'ସାଧୁ ପ୍ରଧାନ' ଗୁରୁଦେବ ଭାବେ ସମ୍ମାନିତ ହୋଇଥିଲେ । ମାଧ୍ୱାଚାର୍ଯ୍ୟ ଓ ନିମ୍ବାର୍କଙ୍କ ବିଶିଷ୍ଟ ଦ୍ୱୈତ ମତବାଦର ପୃଷ୍ଠପୋଷକ ଭାବେ ସେ ରାଧାକୃଷ୍ଣଙ୍କ ପ୍ରେମ ସମ୍ବଳିତ ଗୀତିନାଟ୍ୟ ରଚନା କରୁଥିଲେ ଏବଂ ନିଜର ଛାତ୍ରଛାତ୍ରୀଙ୍କୁ ନେଇ ଗୋଟିଏ ନାଟ୍ୟଲୀଳା ଦଳ ମଧ୍ୟ ଗଢିଥିବା ସମ୍ଭବ ।

ବିଖ୍ୟାତ ଐତିହାସିକ ଡଃ ସତ୍ୟ ନାରାୟଣ ରାଜଗୁରୁ ମଧୁକେଶ୍ୱର ମନ୍ଦିର, ସୀମାଚଳର ବରାହ ନୃସିଂହ ମନ୍ଦିର ଏବଂ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରର ଶିଳାଲେଖ ପଠନ କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, କାମାର୍ଣ୍ଣବ ଦେବଙ୍କ ଅଭିଷେକ ଉତ୍ସବରେ ଯୋଗଦେବାକୁ ଚୋଡଗଙ୍ଗଦେବଙ୍କ ନିମନ୍ତ୍ରଣରେ କୂର୍ମପାଟକରୁ ଯେଉଁ ନାଟ୍ୟଦଳଗୁଡିକ ପୁରୀ ଆସିଥିଲେ, ତା'ର ମୁଖ୍ୟଭାବେ ଜୟଦେବ ଶ୍ରୀକ୍ଷେତ୍ର ଆସିଥିବେ । ସେହି ନାଟ୍ୟଦଳର ପ୍ରଶଂସା ଏବଂ ରାଧାକୃଷ୍ଣ ଲୀଳାର ଖ୍ୟାତି ସର୍ବତ୍ର ଜ୍ଞାତ ଥିଲା ଏବଂ କଳିଙ୍ଗରୁ ଆସିଥିବା ସମ୍ରାଟ ଚୋଡଗଙ୍ଗଦେବ ଜୟଦେବଙ୍କ ନାଟ୍ୟଦଳକୁ ନିମନ୍ତ୍ରଣ କରିଥିବା ନିତାନ୍ତ ସ୍ୱାଭାବିକ ଓ ଯୁକ୍ତିଯୁକ୍ତ ।

ଏ ଅନୁମାନ ମୂଳରେ ଅଛି ଚୋଡଗଙ୍ଗଦେବଙ୍କ ଦ୍ୱିତୀୟ ପୁତ୍ରବୀର ରାଘବଦେବଙ୍କ ରାଜତ୍ୱକାଳ (ଖ୍ରୀ. ୧୧୫୬–୧୧୭୦)ରେ ଲିଙ୍ଗରାଜ ମନ୍ଦିର ଭିତରେ ଥିବା ଶିଳାଲେଖା ଯାହାକି 'ସ୍ୱସ୍ତି ରାଘବଦେବସ୍ୟ....' ନାମରେ ଖ୍ୟାତ । ଏହି ଶିଳାଲେଖର ଅର୍ଥ ଡଃ ରାଜଗୁରୁ ନିମ୍ନମତେ ବ୍ୟାଖ୍ୟା କରିଛନ୍ତି ।

''ଶ୍ରୀରାଘବଦେବଙ୍କର ରାଜତ୍ୱକାଳରେ ଶ୍ରୀ କୀର୍ତ୍ତିବାସେଶ୍ୱର (ଶ୍ରୀ ଲିଙ୍ଗରାଜ)ଙ୍କ ପ୍ରୀତି ସଂପାଦନ ପାଇଁ ମେଡମ ଦେବୀ ଏବଂ ତାଙ୍କ ମାତା ଓ ପିତା କୋମିନାୟକ ସମସ୍ତେ ମିଶି ପ୍ରତ୍ୟେକ ଗୋଟିଏ ଲେଖାଏଁ ଅଖଣ୍ଡଦୀପ ଦାନ କରିଥିଲେ । ସେତେବେଳେ କୂର୍ମପାଟକର ସୁପ୍ରସିଦ୍ଧ (ପ୍ରବର) ସାଧୁ ପ୍ରଧାନ ଜୟଦେବଙ୍କଠାରୁ କ୍ରୟ କରି ବାହେଡାଖଣ୍ଡ କ୍ଷେତ୍ରର ସମସ୍ତ ସ୍ୱତ୍ୱ କୀର୍ତ୍ତିବାସେଶ୍ୱରଙ୍କୁ ଦାନ କରାଗଲା ।''

ଏହି ଶିଳାଲେଖର ଗୋଟିଏ ଭୁଲ ବ୍ୟାଖ୍ୟା କରି ଆଗରୁ କୁହାଯାଉଥିଲା ଯେ ମେଡମଦେବୀ ଓ ତାଙ୍କ ମାତା ଓ ପିତା ଅଖଣ୍ଡଦୀପ ପାଇଁ ବାହେଡାଖଣ୍ଡର ମଧତ୍ୱାଧିକାର କୀର୍ତ୍ତିବାସେଶ୍ୱରଙ୍କୁ ଦାନ କଲାବେଳେ କୂର୍ମପାଟକ ପ୍ରବର ସାଧୁ ପ୍ରଧାନ ଜୟଦେବ ସେଠାରେ ଉପସ୍ଥିତ ଥିଲେ । ଆଉ କେତେଜଣ ସାଧୁ ପ୍ରଧାନ ଜୟଦେବଙ୍କୁ ଜଣେ ଧନୀ ବ୍ୟବସାୟୀ ବୋଲି ମଧ୍ୟ କହିଥିଲେ, ଯାହାଙ୍କୁ ଜମିବାଡି ବିକ୍ରୀ ବେଳେ ସାକ୍ଷୀ କରାଯାଉଥିଲା । ପ୍ରକୃତରେ କିନ୍ତୁ ବାହେଡାଖଣ୍ଡର ସ୍ୱତ୍ୱ ଜୟଦେବଙ୍କଠାରୁ କିଣାଯାଇ ଲିଙ୍ଗରାଜଙ୍କୁ ଦିଆଯାଇଥିଲା । ଅଖଣ୍ଡଦୀପ ଦାନ ଏବଂ ତା ପାଇଁ ଅର୍ଥ କେଉଁ ସୂତ୍ରରୁ ଆସିବ ଏକଥା ମନ୍ଦିର ଗାତ୍ରରେ ଲେଖାଇବା କଳିଙ୍ଗର ଏକ ପ୍ରାଚୀନ ପ୍ରଥା ଥିଲା । ଜୟଦେବଙ୍କର କୂର୍ମପାଟକରେ ପ୍ରଧାନ ଆଚାର୍ଯ୍ୟ ଓ ବୈଷ୍ଣବ ସାଧୁ ଭାବରେ ଯେଉଁ ସୁନାମ ଥିଲା ସେଥିପାଇଁ ତାଙ୍କୁ କୂର୍ମପାଟକ ପ୍ରବର କୁହାଯାଇଛି । ଗଙ୍ଗବଂଶର ରାଜାମାନଙ୍କଠାରୁ ସେ ଦାନ ସୂତ୍ରରେ ବାହେଡାଖଣ୍ଡ ଅଞ୍ଚଳ ପାଇଥିବେ ଏବଂ ତାଙ୍କର ଗୁଡିସାନି ଛାତ୍ରୀ ଓ ଛାତ୍ରଙ୍କ କନ୍ୟାଙ୍କୁ ସେ ସ୍ୱତ୍ୱକୁ ବିକ୍ରୟ କଲେ ଯାହାକି ସେମାନେ ଲିଙ୍ଗରାଜଙ୍କୁ ଦାନ କଲେ ଏବଂ ଯେଉଁ ଅର୍ଥରୁ ଅଖଣ୍ଡଦୀପ ବସିବାର ଖର୍ଚ୍ଚ ବହନ କରାଯିବ ।

ମେଡମ୍ ଦେବୀଙ୍କ ପିତା କୋମିନାୟକ ମୁଖଲିଙ୍ଗମଠାରେ ମଧୁକେଶ୍ୱର ମନ୍ଦିରରେ ୧୧୧୩ ଖ୍ରୀଷ୍ଟାବ୍ଦରେ ଏକ ଅଖଣ୍ଡଦୀପ ଦାନ କରିଥିଲେ ଏବଂ ଏହା ଏକ ଶିଳାଲେଖରେ ସେହି ମନ୍ଦିରରେ ଲିପିବଦ୍ଧ ହୋଇଛି । ବେନ୍ନମ ପେରାଡ ଓ ଗୁଡିସାନି ଏରକମ୍ମାଙ୍କ କନ୍ୟା ଥିଲେ ନଙ୍ଗମା ଦେବୀ । ସେ ନିଜେ ଜଣେ ଗୁଡିସାନି ଅର୍ଥାତ୍ ମନ୍ଦିର ନର୍ତ୍ତକୀ । ସେ ବିବାହ କରିଥିଲେ ପସାଇତ ବା ଦେବ ସେବକ କୋମି ନାୟକଙ୍କୁ । କୋମି ନାୟକ ଓ ନଙ୍ଗମାଙ୍କ ସୁଯୋଗ୍ୟା କନ୍ୟା ଥିଲେ ମେଡମ୍ ଦେବୀ ।

୧୧୨୮ ଖ୍ରୀଷ୍ଟାବ୍ଦରେ କୋମି ନାୟକ ଓ ନଙ୍ଗମା ମିଶି ମଧୁକେଶ୍ୱର ମନ୍ଦିରରେ ଆଉ ଏକ ଅଖଣ୍ଡଦୀପ ପ୍ରଦାନ କରିଥିଲେ । ଏଥିରେ ମଧ୍ୟ ନଙ୍ଗମାଙ୍କ ମା ଏରକମ୍ମାଙ୍କ ନାମ ଉଲ୍ଲେଖ ଅଛି । ମେଡମଦେବୀଙ୍କ ମାତା ନଙ୍ଗମା ଦେବୀଙ୍କୁ କୂର୍ମପାଟକରେ ସଙ୍ଗୀତ ଓ ନୃତ୍ୟ ଶିକ୍ଷା ଦେଇଥିବା ଜୟଦେବ ସେଠାରେ ସାଧୁ ପ୍ରଧାନ ଉପାଧିରେ ଭୂଷିତ ଥିଲେ ଏବଂ ତାଙ୍କୁ କୂର୍ମପାଟକର ଜଣେ ମାନ୍ୟଗଣ୍ୟ ନାଗରିକ ଭାବେ ଶିଳା ଫଳକରେ କୂର୍ମପାଟକ ପ୍ରବର ବୋଲି ବର୍ଣ୍ଣିତ କରାଯାଇଛି । କୋମି ନାୟକଙ୍କ ପରିବାରର ଗୁରୁଭକ୍ତି ଏଠାରେ ଲକ୍ଷ୍ୟ କରିବା କଥା । ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଲିଙ୍ଗରାଜ ମନ୍ଦିରରେ ଚିରକାଳକୁ ଲିପିବଦ୍ଧ ରହିଲା ଯେ ବାହେଡାଖଣ୍ଡର ସମସ୍ତ ଅଞ୍ଚଳ ଉପରେ ସାଧୁପ୍ରଧାନ

ଜୟଦେବଙ୍କର କିମ୍ବା ତାଙ୍କ ଠାରୁ ସ୍ୱତ୍ୱ କ୍ରୟ କରିଥିବା କୋମି ନାୟକଙ୍କ ପରିବାରର କୌଣସି ଅଧିକାର ଆଉ ରହିଲା ନାହିଁ । ଦାନସୂତ୍ରରେ ପ୍ରଭୁ ଲିଙ୍ଗରାଜ ବିଜେ ଭୁବନେଶ୍ୱର, ସେ ସମ୍ପତ୍ତିର ଅଧିକାରୀ ହେଲେ ଏବଂ ଏହି ସମ୍ପତ୍ତିରୁ ମିଳିବା ଅର୍ଥରେ ଅଖଣ୍ଡଦୀପ ଜଳିବ ଓ ଅନ୍ୟାନ୍ୟ ମନ୍ଦିର ନୀତି ଚଳିବ । ଲିଙ୍ଗରାଜ ମହାପ୍ରଭୁ ସେହି ଦିନଠାରୁ ବାହେଡାଖଣ୍ଡ କ୍ଷେତ୍ରର ମଧ- ସ୍ୱତ୍ୱାଧିକାରୀ ହେଲେ ।

ଜୟଦେବ କୂର୍ମପାଟକକୁ ଛାତ୍ର ହିସାବରେ ଯାଇ ସେଠାରେ ଶାସ୍ତ୍ରୀୟ ସଙ୍ଗୀତ ଓ ନୃତ୍ୟକଳା ଶିକ୍ଷା କରିନଥିଲେ ବିଭିନ୍ନ ରାଗରେ ସଂସ୍କୃତରେ ଗୀତଗୋବିନ୍ଦ ରଚନା କରିବା ତାଙ୍କ ପକ୍ଷେ ସମ୍ଭବ ହୋଇନଥାନ୍ତା । ଡଃ ରାଜଗୁରୁଙ୍କ ଭାଷାରେ କଳିଙ୍ଗ ସଙ୍ଗୀତ ପଦ୍ଧତିର କ୍ରମବିକାଶ ହିଁ ଜୟଦେବଙ୍କ ଗୀତଗୋବିନ୍ଦରେ ଆତ୍ମପ୍ରକାଶ କରିଛି । ଡଃ ସତ୍ୟନାରାୟଣ ରାଜଗୁରୁ ଯଦି ମୁଖଲିଙ୍ଗମ୍‌ରେ ମଧୁକେଶ୍ୱର ମନ୍ଦିରରେ ଥିବା ସମସ୍ତ ଶିଳା ପ୍ରସ୍ତର ଲେଖା ପାଠକରି ତାହାର ସଠିକ୍ ବ୍ୟାଖ୍ୟା କରିନଥାନ୍ତେ, ତେବେ କୂର୍ମପାଟକ ପ୍ରବର ସାଧୁ ପ୍ରଧାନ ଜୟଦେବ ହିଁ ଗୀତଗୋବିନ୍ଦର ରଚୟିତା ମହାକବି ଜୟଦେବ, ଏକଥା ନିର୍ଭୁଲ ଭାବେ ପ୍ରମାଣ କରାଯାଇପାରିନଥାନ୍ତା । କୋମି ନାୟକ ପରିବାରଙ୍କ ସହ ଜୟଦେବଙ୍କ ସମ୍ପର୍କ ଗୁରୁ ଓ ଛାତ୍ରର ସମ୍ପର୍କ । ଶ୍ରୀକୂର୍ମ ମନ୍ଦିରର ଇତିହାସ ଓ ଗଙ୍ଗବଂଶୀୟ ରାଜା ବଜ୍ରହସ୍ତଦେବ ଦେଇଥିବା ତାମ୍ର ଫଳକରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ କୂର୍ମପାଟକରେ ଏଭଳି ଏକ ନୃତ୍ୟ, ସଙ୍ଗୀତ ଓ ଶାସ୍ତ୍ର ଶିକ୍ଷାକେନ୍ଦ୍ର ଥିଲା ।

ବୈଷ୍ଣବ କବି ମାଧବ ପଟ୍ଟନାୟକ ରାସନୃତ୍ୟ ବା ରାସ ଲୀଳାର ଉତ୍ପତ୍ତି ବିଷୟ ୧୫୩୫ ଖ୍ରୀ.ରେ ସ୍ୱଲିଖିତ 'ବୈଷ୍ଣବ ଲୀଳାମୃତ' ପୁସ୍ତକରେ ନିମ୍ନମତେ ବର୍ଣ୍ଣନା କରିଛନ୍ତି:

ଗଙ୍ଗବଂଶୀୟ ସମ୍ରାଟ ଚୋଡଗଙ୍ଗଦେବ କଳିଙ୍ଗରୁ ଆସି ଉତ୍କଳଖଣ୍ଡ ଅଧିକାର କରିଥିଲେ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ କଳିଙ୍ଗ, କୋଶଳ, ତୋଷାଳୀ, କଙ୍ଗୋଦ ଓ ଉତ୍କଳ ଏସବୁ ଆଜିର ଭୌଗଳିକ ଓଡ଼ିଶାର ବିଭିନ୍ନ ଅଂଶକୁ ଇତିହାସରେ ବିଭିନ୍ନ ସମୟରେ ସେଭଳି କୁହାଯାଉଥିଲା । କଳିଙ୍ଗ ନାମରେ ପରିଚିତ ଅଂଶର କେତେକ ଅଂଶ ଆଜି ଆନ୍ଧ୍ର ପ୍ରଦେଶରେ, କୋଶଳ ନାମରେ ପରିଚିତ ପ୍ରାନ୍ତରେ ଅନେକ ଅଂଶ ଆଜି ଛତିଶଗଡ ରାଜ୍ୟରେ, ଉତ୍କଳ ନାମରେ ପରିଚିତ ପ୍ରାନ୍ତର ଅନେକ ଅଂଶ ଆଜି ଝାଡଖଣ୍ଡ ଓ ପଶ୍ଚିମବଙ୍ଗ ରାଜ୍ୟରେ ଅଛି । ତୋଷାଳୀ ଓ କଙ୍ଗୋଦ ଖଣ୍ଡ ନାମରେ ପରିଚିତ ଅଂଶ ହୁଏତ ସମ୍ପୂର୍ଣ୍ଣଭାବେ ଆଜିର ଓଡ଼ିଶାରେ ଅଛି । ଜଗନ୍ନାଥଙ୍କର ଏକ ମନ୍ଦିର ପୂର୍ବରୁ ପୁରୀରେ ଥିଲା, ତାହା ଆକାରରେ କ୍ଷୁଦ୍ର ଥିଲା ଏବଂ ଜରାଜୀର୍ଣ୍ଣ ଅବସ୍ଥାକୁ ଆସିଥିଲା । ଏହି ଜୀର୍ଣ୍ଣ ଦେଉଳର ସଂସ୍କାର କରି ଚୋଡଗଙ୍ଗଦେବ ଆଉ ଏକ ନୂତନ ମନ୍ଦିର ନିର୍ମାଣର ବନ୍ଦୋବସ୍ତ କଲେ । ବର୍ତ୍ତମାନର ଶ୍ରୀମନ୍ଦିରର କେବଳ ଗର୍ଭଗୃହ ଅଂଶଟି ଓ ତତ୍‌ସଂଲଗ୍ନ ଜଗମୋହନର କିଛି ଅଂଶ ସେ ନିର୍ମାଣ କରିଥିଲେ । ଏହି ଗର୍ଭଗୃହକୁ ବିମାନ କୁହାଯାଏ ଓ ପ୍ରବେଶ ଦ୍ୱାରକୁ ଜଗମୋହନ କୁହାଯାଏ । ବହୁ ଧନ ବ୍ୟୟରେ ଏ ଦୁଇଟି କାର୍ଯ୍ୟ ସମ୍ପାଦିତ ହୋଇଥିଲା ।

ମନ୍ଦିର ନିର୍ମାଣବେଳକୁ ଚୋଡଗଙ୍ଗଦେବଙ୍କର ବାର୍ଦ୍ଧକ୍ୟ ଅବସ୍ଥା ଆସିଥିଲା । ଏହି ଗର୍ଭଗୃହ ପ୍ରତିଷ୍ଠାବେଳେ ଚୋଡଗଙ୍ଗଦେବ ନିଜ ଜ୍ୟେଷ୍ଠପୁତ୍ର ଯୁବରାଜ କାମାର୍ଣ୍ଣବଦେବଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ଗର୍ଭଗୃହ ପ୍ରତିଷ୍ଠା ଓ ଯୁବରାଜଙ୍କ ଅଭିଷେକ ଏଇ ଦୁଇଟି ଉତ୍ସବ ବହୁ ଆଡମ୍ବରରେ ଏକ ସଙ୍ଗରେ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ପ୍ରଥମ ଥର ପାଇଁ ଓଡ଼ିଶାରେ ହରିଲୀଳା ନୃତ୍ୟନାଟିକାର ପ୍ରଚଳନ ହୋଇଥିଲା ।

ହରିଲୀଳା ଗାନ କରିବା ପାଇଁ ଚୋଡଗଙ୍ଗଦେବ ନାଚୁଣୀ ମାହାରୀମାନଙ୍କୁ ଦକ୍ଷିଣରୁ ଅଣାଇ ନିଯୁକ୍ତି ଦେଲେ । ଚୋଡଗଙ୍ଗଦେବ ଗୋଦାବରୀ ନଦୀକୂଳରୁ ମୃତ୍ତିକା ଅଣାଇ ସେଥିରେ ମୃଦଙ୍ଗ ନିର୍ମାଣ କରାଇଲେ । ସେଇ ମୃଦଙ୍ଗ ବ୍ୟବହାର କରାଯାଇ ଜଗନ୍ନାଥ ମନ୍ଦିରରେ ନାମ ସଂକୀର୍ତ୍ତନ ପ୍ରଚଳନ କରାଗଲା । ମୃଦଙ୍ଗ ସାଙ୍ଗକୁ ଝାଞ୍ଜ, ଗିନି ଓ କରତାଳ ମିଶାଇ ସଂକୀର୍ତ୍ତନ କରାହେଲା । ଗର୍ଭଗୃହ ପ୍ରତିଷ୍ଠା ଓ କାମାର୍ଣ୍ଣବଦେବଙ୍କ ରାଜ୍ୟାଭିଷେକରେ ଅନେକ କୀର୍ତ୍ତନର ଆୟୋଜନ କରାଯାଇଥିଲା । ନାଚୁଣୀ ମାହାରୀମାନେ ହରିଲୀଳା ନାଟକ ଶ୍ରୀମନ୍ଦିରର ନାଟମଣ୍ଡପରେ ପ୍ରଦର୍ଶନ କଲେ । ଦେବଦାସୀଙ୍କ ନୃତ୍ୟ ନୂତନ ମନ୍ଦିରର ଗର୍ଭଗୃହରେ ଅନୁଷ୍ଠିତ ହୋଇଥିଲା । ହରିଙ୍କ ସ୍ତୁତି ସହିତ ଦେବଦାସୀଙ୍କ ନୃତ୍ୟ, ମୃଦଙ୍ଗ, ଝାଞ୍ଜ ଓ ଗିନିର ସଙ୍ଗୀତ ଏକ ଅପୂର୍ବ ମୂର୍ଚ୍ଛନା ସୃଷ୍ଟି କଲା । ମାହାରୀମାନଙ୍କର ଏଇ ନୃତ୍ୟକୁ ହିଁ ରାହାସ ନୃତ୍ୟ ଆଖ୍ୟା ଦିଆଗଲା । ଚୋଡଗଙ୍ଗଦେବ ଏ ଉତ୍ସବ ଦୁଇଟିରୁ ଅପୂର୍ବ ସନ୍ତୋଷ ଲାଭ କଲେ । ଏଇ ନାଚୁଣୀ ମାହାରୀମାନଙ୍କୁ ଦେବଦାସୀ କୁହାଯାଉଥିଲା । ଶ୍ରୀକୂର୍ମ ମନ୍ଦିରରେ ଗଙ୍ଗବଂଶୀୟ ରାଜାମାନେ ଦକ୍ଷିଣ ଭାରତରୁ ଆଣି ଏ ପ୍ରଥା ପ୍ରଚଳନ କରାଇଥିଲେ ।

ଏ ସଂକୀର୍ତ୍ତନ ବ୍ୟତୀତ ଆଉ ଏକ ରାହାସ ନୃତ୍ୟ କଥା ମାଧବ ପଟ୍ଟନାୟକ ଉଲ୍ଲେଖ କରିଛନ୍ତି:

''ଏଥୁ ଅନ୍ତରେ ଗୁଣି ଜନେ ॥ ଗୀତଗୋବିନ୍ଦ ପରିମାଣେ ॥
ବିପ୍ର ସେ ଜୟଦେବ ନାମ ॥ କ୍ଷେତ୍ରବରକୁ ଆଗମନ ॥
କେନ୍ଦୁଲୀ ଶାସନ ତା ଗ୍ରାମ ॥ ପ୍ରାଚୀ ନଦୀର ତଟ ପୁଣ ॥
ନିଆଳି ମାଧବ ସମୀପେ ॥ ଭଗତି କଲା ନାନା ରୂପେ ॥
ଶାସ୍ତ୍ର ପୁରାଣେ ବିଚକ୍ଷଣ ॥ କବିତ୍ୱ ମାର୍ଗେ ତାର ମନ ॥
ଗୀତ ସେ ରଚିବି ବୋଇଲା ॥ କ୍ଷେତ୍ରବାସକୁ ମନ ଦେଲା ॥
ଶ୍ରୀଜଗନ୍ନାଥର ସମୀପେ ॥ ଶୁଦ୍ଧ ସାତ୍ତ୍ୱିକ ମତିଭାବେ ॥
ରଚିଲା ଶ୍ରୀଗୀତଗୋବିନ୍ଦ ॥ ଲଭିଲା ପରମ ଆନନ୍ଦ ॥
ଶ୍ରୀରାଧା ମାଧବର ଲୀଳା ॥ ମଧୁର ସ୍ୱରରେ ଗାଇଲା ॥
ପତ୍ନୀ ତାହାର ପଦ୍ମାବତୀ ॥ ଗୀତର ତାଳେ ସେ ନୃତ୍ୟନ୍ତି ॥
ରାହାସ ନୃତ୍ୟ କଳା ଜାଣି ॥ ନାଟ ସେ କଲାକ ନାଚୁଣୀ ॥
ଭଗତେ ଧନ୍ୟ ଧନ୍ୟ କଲେ ॥ ଭଗତି ଭାବେ ଭୋଳ ହେଲେ ॥

ଏବେ ମଧ୍ୟ ଓଡ଼ିଶାରେ କାର୍ତ୍ତିକ ପୂର୍ଣ୍ଣିମାର ଅନ୍ୟନାମ ରାହାସ ପୂର୍ଣ୍ଣିମା କାରଣ ବୃନ୍ଦାବନରେ ଶରତରାସର ପ୍ରଚଳନ ଥିଲା । ଜୟଦେବଙ୍କ ଗୀତଗୋବିନ୍ଦ ରଚନା ବେଳକୁ ଓଡ଼ିଶାରେ ବସନ୍ତରାସର ପ୍ରଚଳନ ହୋଇଥିଲା । ତେଣୁ ଗୀତଗୋବିନ୍ଦରେ ବସନ୍ତରାସର ବର୍ଣ୍ଣନା ଅତ୍ୟନ୍ତ ମନୋମୁଗ୍ଧକର ଭାବେ କରାଯାଇଛି । ବୈଷ୍ଣବ ସାହିତ୍ୟ ଓ ସଂସ୍କୃତିରେ ବସନ୍ତରାସର ବର୍ଣ୍ଣନା ମହାକବି ଜୟଦେବଙ୍କର ଦାନ । ଶ୍ରୀଚୈତନ୍ୟ ଓ ପଞ୍ଚସଖା ଓଡ଼ିଶାର ଗ୍ରାମେ ଗ୍ରାମେ ବୁଲି ସଂକୀର୍ତ୍ତନ ରସ ପ୍ରସାର କରିଥିଲେ ଏବଂ ପ୍ରତିବର୍ଷ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀକୁ ଯାଇ କେନ୍ଦୁଲୀ ରାସ୍ତାରେ ଗୀତଗୋବିନ୍ଦ ପଦ ବୋଲି ରାସ ସଂକୀର୍ତ୍ତନ କରୁଥିଲେ । ଏହିପରି ଓଡ଼ିଶାରେ ଶ୍ରୀମନ୍ଦିର ଓ ରାହାସ ନୃତ୍ୟର ସମ୍ପର୍କ ଅତି ପ୍ରାଚୀନ ଓ ସମୃଦ୍ଧ । ଏହି ରାସନୃତ୍ୟ ବୃନ୍ଦାବନରୁ ଓଡ଼ିଶା ଆସି ନାହିଁ କିମ୍ବା ଶ୍ରୀଚୈତନ୍ୟ ଏହାକୁ ବଙ୍ଗଦେଶରୁ ଆଣିନାହାନ୍ତି । ଏହା ଓଡ଼ିଶାର ଏକାନ୍ତ ନିଜସ୍ୱ ।

ଶ୍ରୀଗୀତଗୋବିନ୍ଦ ଗୋଟିଏ ଗୀତି କାବ୍ୟ ବା ସଙ୍ଗୀତ ଧର୍ମୀ ମହାକାବ୍ୟ ଯେଉଁଥିରେ ସାହିତ୍ୟ, ନାଟକ, ସଙ୍ଗୀତ ଓ ନୃତ୍ୟର ଏକ ଅପୂର୍ବ ଯୌଗିକ ସମ୍ମିଶ୍ରଣ ହୋଇଛି । ଡ. ଭଗବାନ ଚନ୍ଦ୍ର ପଣ୍ଡାଙ୍କ ଭାଷାରେ ଏହା ଏପରି ଏକ କାବ୍ୟ ଯାହା ମାନବ ହୃଦୟର ଗଭୀରତମ ତନ୍ତ୍ରୀକୁ ସ୍ପର୍ଶ କରେ ଏବଂ ଜୀବନଦର୍ଶନର ସୂକ୍ଷ୍ମତମ ନିୟମକୁ ବ୍ୟାଖ୍ୟା ଓ ବୟାନ କରେ । ଏହି କାବ୍ୟର ସାହିତ୍ୟ ରଚନା ଶୈଳୀ, ସାଙ୍ଗୀତିକତା ଓ ମାଧୁର୍ଯ୍ୟ ଜୀବନର ପ୍ରତ୍ୟେକଟି ମୁହୂର୍ତ୍ତକୁ ରସମୟ କରିପାରେ । କାବ୍ୟ ରଚନାର ଯଦି କୌଣସି ବିଜ୍ଞାନ ଥାଏ, ତେବେ ତା'ର ପ୍ରତ୍ୟେକଟି ନୀତି ନିୟମ ପାଳନ କରି ଲେଖାଯାଇଛି ଗୀତଗୋବିନ୍ଦ ମହାକାବ୍ୟ ।

ଭାରତରେ ସଂସ୍କୃତରେ ରଚିତ ହୋଇଥିବା ଗୀତିକାବ୍ୟମାନଙ୍କ ମଧ୍ୟରେ ଶ୍ରୀଗୀତଗୋବିନ୍ଦ ସର୍ବଶ୍ରେଷ୍ଠ । ଉଭୟ ଶୈଳୀ ଓ ବିଷୟବସ୍ତୁ ଦୃଷ୍ଟିରୁ ଏହାକୁ ସଂସ୍କୃତ ସାହିତ୍ୟର ସର୍ବୋତ୍ତମ ସଙ୍ଗୀତ ରଚନା କୁହାଯାଇପାରେ । ପବିତ୍ର ପ୍ରାଚୀ ନଦୀ ତୀରରେ ଆଜିର ଖୋର୍ଦ୍ଧା ଜିଲ୍ଲାର ବାଲିଅନ୍ତା ବ୍ଲକରେ କେନ୍ଦୁବିଲ୍ୱ ନାମକ ବ୍ରାହ୍ମଣ ଶାସନରେ, ଭୋଜଦେବ ଓ ବାମାଦେବୀଙ୍କ ପରିବାରରେ ପବିତ୍ର ଅକ୍ଷୟ ତୃତୀୟା ଦିନ ଜନ୍ମ ହୋଇଥିଲେ ଜୟଦେବ । ସେ ଥିଲେ ଚୋଳଗଙ୍ଗଦେବଙ୍କ ଦୁଇପୁତ୍ର କାମାର୍ଣ୍ଣବ ଦେବ (୧୧୪୭ଖ୍ରୀ.-୧୧୫୬ଖ୍ରୀ.) ଓ ରାଘବଦେବ (୧୧୫୬ଖ୍ରୀ.ରୁ ୧୧୭୦ଖ୍ରୀ.)ଙ୍କ ସମସାମୟିକ । ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ବାସ କରି ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ସେ ରଚନା କରିଥିଲେ ଗୀତଗୋବିନ୍ଦ ।

ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କ ସ୍ୱର୍ଗୀୟ ପ୍ରେମ ଉପରେ ଆଧାରିତ ହୋଇଥିବା ଏହି ମଧୁର ସଙ୍ଗୀତ ସମ୍ବଳିତ କାବ୍ୟଟି କେବଳ ସାରା ଭାରତରେ କାହିଁକି ସାରା ବିଶ୍ୱରେ ଏବେ ସାହିତ୍ୟ, ସଙ୍ଗୀତ ଓ ବୈଷ୍ଣବ ଧର୍ମ ପ୍ରେମୀଙ୍କ ମହଲରେ ସୁପରିଚିତ । କିନ୍ତୁ ଓଡ଼ିଶାର ଏହି କାବ୍ୟଟି ଗାଁ ଗହଳିରେ ମଧ୍ୟ ବିଖ୍ୟାତ । ଓଡ଼ିଶାର ଅଶିକ୍ଷିତ ଲୋକମାନେ ମଧ୍ୟ ଗୀତଗୋବିନ୍ଦ କାବ୍ୟ ଓ ତା'ର ରଚୟିତା ଜୟଦେବଙ୍କ ନାମ ଶୁଣିଛନ୍ତି ଏବଂ କେବଳ ଓଡ଼ିଶାରେ ମଙ୍ଗଳା ଠାକୁରାଣୀଙ୍କ ମନ୍ଦିରରେ ଓ ଶିବ ମନ୍ଦିରରେ ମଧ୍ୟ ଗୀତଗୋବିନ୍ଦ ପ୍ରାର୍ଥନା ବୋଲାଯାଏ ।

କେବଳ ଗୋଟିଏ କ୍ଷୁଦ୍ର କାବ୍ୟ ଲେଖି ପୃଥିବୀର ଆଉ କୌଣସି କବି ଏତେ ଖ୍ୟାତି ଓ ଅମରତ୍ୱ ପାଇ ନାହାନ୍ତି । ପ୍ରାଚୀନ ଓଡ଼ିଶାର ଯାତ୍ରା ପରମ୍ପରାର ଶୈଳୀ ଓ ଓଡ଼ିଶା ସଙ୍ଗୀତ ଶୈଳୀକୁ ଭାରତ ସମକ୍ଷରେ ସଂସ୍କୃତ କାବ୍ୟ ମାଧ୍ୟମରେ ପ୍ରକାଶ କରି ଜୟଦେବ ଯେଉଁ ସାଂସ୍କୃତିକ ପରମ୍ପରା ସୃଷ୍ଟି କରିଛନ୍ତି, ତାହା ବିଶ୍ୱରେ ବିରଳ । ଓଡ଼ିଶାର ସାହିତ୍ୟ, କଳା, ସଙ୍ଗୀତ, ସ୍ଥାପତ୍ୟ, ବୟନ ଶିଳ୍ପ, ନୃତ୍ୟକୁ ଗୀତଗୋବିନ୍ଦ କାବ୍ୟ ଏତେ ଗଭୀର ଭାବେ ପ୍ରଭାବିତ କରିଛି ଯେ ଏହା ଓଡ଼ିଶାର ଜୀବନ ଶୈଳୀର ଏକ ଅବିଚ୍ଛେଦ୍ୟ ଅଙ୍ଗରେ ପରିଣତ ହୋଇଛି ।

ଶ୍ରୀଗୀତଗୋବିନ୍ଦ ପାଇଁ ହିଁ ଦଶାବତାର ତତ୍ତ୍ୱ ସାରା ଭାରତରେ ପ୍ରିୟ ହୋଇଥିଲା । ରାଧାମାଧବ ଉପାସନା ଓଡ଼ିଶାରୁ ଆରମ୍ଭ ହୋଇ

ଦେଶର ଅନ୍ୟାନ୍ୟ ପ୍ରାନ୍ତକୁ ଯାଇଥିଲା । ବିଷ୍ଣୁଙ୍କ ଷୋଳକଳାର ପ୍ରତିନିଧିତ୍ୱ କରୁଥିବା କୃଷ୍ଣଙ୍କୁ ମାଧବ ନାମରେ ପୂଜା, ରାଧାଙ୍କୁ ଦେବୀଭାବେ ଉପାସନା କରିବା ଇତ୍ୟାଦି ଓଡ଼ିଶାର ସୃଷ୍ଟି । ଜଗନ୍ନାଥଙ୍କଠାରେ କୃଷ୍ଣତ୍ୱର ଆରୋପ ଜୟଦେବଙ୍କଠାରୁ ଆରମ୍ଭ ।

ବଡସିଂହାର ବା ବୃହତ୍ ଶୃଙ୍ଗାର ବେଶ ସମୟରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଅଙ୍ଗ ଆଚ୍ଛାଦନ କରାଯାଉଥିଲା କେନ୍ଦୁଲୀରେ ବୁଣାଯାଉଥିବା ଶ୍ରୀଗୀତଗୋବିନ୍ଦ ଶ୍ଳୋକାବଳୀ ମଣ୍ଡିତ ଖଣ୍ଡୁଆ ବା ଉତ୍ତରୀୟରେ । ପଣ୍ଡିତ ସ୍ୱର୍ଗତ ସଦାଶିବ ରଥ ଶର୍ମାଙ୍କ ମତରେ ଖଣ୍ଡୁଆ ଦେହରେ ଶ୍ରୀଗୀତଗୋବିନ୍ଦ ଶ୍ଳୋକାବଳୀ ବୁଣିବା ଥିଲା ବୟନ ଶିଳ୍ପର ଚରମ ଉତ୍କର୍ଷର ପରିଚାୟକ ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କଠାରୁ କନିଷ୍ଠ ଓ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ପୂର୍ବବର୍ତ୍ତୀ ଦ୍ୱିଜ ଶ୍ରୀଧର ଲେଖିଥିବା କାଞ୍ଚନଲତା କାବ୍ୟରୁ ଜଣାଯାଏ ଯେ ଶ୍ରୀଜୟଦେବଙ୍କ ଜନ୍ମଭୂମି କେନ୍ଦୁଲୀ ବୟନ ଶିଳ୍ପ ପାଇଁ ପ୍ରସିଦ୍ଧି ଲାଭ କରିଥିଲା । ଦ୍ୱିଜ କୁମାରଙ୍କର ବେଶ ବର୍ଣ୍ଣନା କରିବାକୁ ଯାଇ କବି ଶ୍ରୀଧର ଏହି କାବ୍ୟର ପ୍ରଥମ ଛାନ୍ଦରେ ଲେଖିଛନ୍ତି–

ସହଜେ ଦ୍ୱିଜ ନନ୍ଦିନୀ ତେଜଧାମା କନକ କାନ୍ତି
କଳାକେନ୍ଦୁଲୀ ଶାଢୀ ଏ ଭିଡି ପିନ୍ଧିଛି ମୋତିଦନ୍ତୀ

ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭ ବେଳକୁ କେନ୍ଦୁଲୀ ଶାଢୀ ସାରା ଦେଶରେ ଖ୍ୟାତି ଓ ଲୋକପ୍ରିୟତା ଅର୍ଜନ କରିଥିଲା । ଶ୍ରୀଗୀତଗୋବିନ୍ଦର ଲୋକପ୍ରିୟତା ଓଡ଼ିଶାର ବୟନ ଶିଳ୍ପ ଅଭିବୃଦ୍ଧିରେ ଏହିପରି ସହାୟକ ଥିଲା ।

ଗୀତଗୋବିନ୍ଦ ବାନ୍ଧ ଶୁଦ୍ଧ ରେଶମରୁ ତିଆରି ହୁଏ ଏବଂ ବାନ୍ଧ (ଇକାଟ୍) ଶୈଳୀରେ ସଜ୍ଜିତ ହୁଏ । ଗୀତଗୋବିନ୍ଦ ଶ୍ଳୋକ ଲିଖନ ହିଁ ଏହାର ପରିପାଟୀ ହୋଇଥାଏ । ଏହାକୁ କେନ୍ଦୁଲୀ ଶାଢୀ, ଖଣ୍ଡୁଆ ବା ଚଦର ମଧ୍ୟ କୁହାଯାଏ । ପୁରୀର ଶ୍ରୀଜଗନ୍ନାଥ ମନ୍ଦିରରେ ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରାଙ୍କର ବଡସିଂହାର ବେଶରେ ଏହା ଲାଗି କରାଯାଏ । ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ସେବା ମଧ୍ୟରେ ଗୀତଗୋବିନ୍ଦ ଶାଢୀ ବା କେନ୍ଦୁଲୀ ଶାଢୀ ଏକ ମୁଖ୍ୟ ଅଙ୍ଗ । ୧୯୫୬ ମସିହାରେ ପ୍ରକାଶିତ ଓଡ଼ିଶା ଗେଜେଟରେ ଯେଉଁ ଶ୍ରୀମନ୍ଦିରର 'ରେକର୍ଡ ଅଫ୍ ରାଇଟ୍ସ' ଲିପିବଦ୍ଧ ହୋଇଛି ସେଥିରେ ୨୬/୨୭ ପୃଷ୍ଠାରେ ଏହା ଦେଖିବାକୁ ମିଳେ । ଅହମ୍ମଦାବାଦର କାଲିକୋ ମ୍ୟୁଜିୟମ୍ ଅଫ୍ ଟେକ୍ସଟାଇଲ୍ସରେ ଏହାର ନମୁନା ରଖାଯାଇଛି । ସୁଇଜରଲ୍ୟାଣ୍ଡର ବାସଲ୍‌ଠାରେ ସ୍ଥିତ ଏଥ୍ନୋଗ୍ରାଫିକ୍ ମ୍ୟୁଜିୟମ୍ ଏବଂ ଆମେରିକାର ସିଆଟଲ୍ ମ୍ୟୁଜିୟମ୍ ଆର୍ଟରେ କେନ୍ଦୁଲୀ ଶାଢୀ ଓ ଖଣ୍ଡୁଆର ପରିପାଟୀର ନମୁନା ରକ୍ଷିତ ଅଛି ।

ଇକାଟ୍ ଫାବ୍ରିକ୍ସ ଅଫ୍ ଓଡ଼ିଶା ଆଣ୍ଡ୍ ଆନ୍ଧ୍ରପ୍ରଦେଶ ପୁସ୍ତକରେ ଶ୍ରୀ ବି.ସି. ମହାନ୍ତି ଓ କଲ୍ୟାଣ କୃଷ୍ଣ, ଏହି କେନ୍ଦୁଲୀ ବାନ୍ଧ ବିଷୟରେ ଲେଖିଛନ୍ତି । ଇ. ଫିଶର୍. ଶ୍ରୀ ସୀତାକାନ୍ତ ମହାପାତ୍ର ଓ ଶ୍ରୀ ଦୀନନାଥ ପାଠୀଙ୍କ ଲିଖିତ ଏକ ପୁସ୍ତକରେ ଇକାଟ ବାନ୍ଧ ବୁଣାର କଳାକୌଶଳ ବିଷୟ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ଏବର ଓଡ଼ିଶାର ତିଗିରିଆ ଓ ନୂଆପାଟଣା ଅଞ୍ଚଳର ବୁଣାକାରମାନେ ଏହି ବାନ୍ଧବୁଣା କୌଶଳ ସହ କେତେକାଳରୁ ପରିଚିତ ଏହା ସଠିକ ଭାବେ କହିହେବ ନାହିଁ । ଗୀତଗୋବିନ୍ଦ ସେବା ପାଇଁ ଗୀତଗୋବିନ୍ଦ ଖଣ୍ଡୁଆର ବ୍ୟବହାର କଥା ମାଦଳା ପାଞ୍ଜିରେ ଲିଖିତ ଅଛି । ଏହା ଦ୍ୱାଦଶ ଶତାବ୍ଦୀରେ ଆରମ୍ଭ ହୋଇ ତ୍ରୟୋଦଶ ଓ ଚତୁର୍ଦ୍ଦଶ ଶତାବ୍ଦୀରେ ବିଶେଷ ପ୍ରଚଳିତ ହେଲା ।

ସର୍ବପ୍ରଥମେ ନିଜ ଜନ୍ମସ୍ଥାନ ପ୍ରାଚୀ ନଦୀକୂଳ ଗ୍ରାମ କେନ୍ଦୁଲୀର ବୁଣାକାରମାନଙ୍କୁ ଜୟଦେବ କହିଥିଲେ ଗୀତଗୋବିନ୍ଦ କାବ୍ୟକୁ କନାରେ ବୁଣି ଲେଖିବା ପାଇଁ । କୌଣସି କାରଣରୁ ଜୟଦେବ ଗୋଟିଏ ରାତିରେ କେନ୍ଦୁଲୀ ଖଣ୍ଡୁଆ ବୁଣାଇ ଜଗନ୍ନାଥଙ୍କୁ ଅର୍ପଣ କରିବାର ଥାଏ । ବୁଣାକାରମାନେ କହିଲେ ଯେତେବେଳେ ରାତିସାରା ସେମାନେ ଲୁଗା ବୁଣୁଥିବେ, ଜୟଦେବ ତାଙ୍କୁ ଗୀତଗୋବିନ୍ଦ ଗାଇ ଶୁଣାଉଥିବେ । ସପ୍ତମ ସର୍ଗ ପାଠ କଲାବେଳେ ଜୟଦେବ ଅତ୍ୟନ୍ତ ଭାବାବେଶରେ ସମାଧିସ୍ଥ ହୋଇଗଲେ ଏବଂ ତାଙ୍କର ଗୀତ ଗାଇବା ବନ୍ଦ ହୋଇଗଲା । ବୁଣାକାରମାନେ ଲୁଗା ବୁଣିବା ବନ୍ଦ କରିଦେବାକୁ ବସିଲେ । ଠିକ୍ ଏତିକି ବେଳେ ଆଉ ଜଣେ ସହାସ୍ୟବଦନ ସାଧୁ ଗିନି ବଜାଇ ବଜାଇ ସେଠାରେ ପହଞ୍ଚିଲେ । ସେ ବୁଣାକାରମାନଙ୍କୁ କହିଲେ "କାମ ବନ୍ଦ କର ନାହିଁ । ମୁଁ ଜୟଦେବଙ୍କ ସାନ ଭାଇ । ମୋର ଗୀତଗୋବିନ୍ଦ ମୁଖସ୍ଥ । ତୁମେ ପବିତ୍ର ଲୁଗାବୁଣା ଚାଲୁରଖ । ମୁଁ ଗୀତଗୋବିନ୍ଦ ଗାଉଛି ।"

ଜୟଦେବ ସମାଧିରୁ ଉଠିଲା ପୂର୍ବରୁ ସାଧୁ ଚାଲିଗଲେ । ବୁଣାକାରମାନେ ଜୟଦେବଙ୍କୁ ତାଙ୍କ ସାନଭାଇ ସାଧୁଙ୍କ କଥା କହିଲେ । ଜୟଦେବ କହିଲେ, "ମୋର କେହି ସାନଭାଇ ନାହାନ୍ତି । ପଦ୍ମାବତୀ ଓ ମୋ ବ୍ୟତୀତ ଗୀତଗୋବିନ୍ଦ କେହି ଜାଣନ୍ତି ନାହିଁ ।" ସାଧୁ ଯେଉଁ ପଦଟି ବୋଲୁଥିଲେ ବୁଣାକାରମାନେ ଜୟଦେବଙ୍କୁ ସେଇ ପଦଟି ବୁଣି ଦେଖାଇଲେ ।

"କଂସାରିରପି ସଂସାର ବାସନା ବନ୍ଧ ଶୃଙ୍ଖଳମ୍
ରାଧାମାଧବ ହୃଦୟେ ତତ୍ୟଜ ବ୍ରଜସୁନ୍ଦରୀ ।"

ଜୟଦେବ କହିଲେ, ''ମୋ ଅନୁପସ୍ଥିତିରେ ମହାପ୍ରଭୁ ଜଗନ୍ନାଥ ଏହା ତୁମକୁ ବୋଲି ଶୁଣାଇଲେ । ତୁମେମାନେ ମହାଭକ୍ତ କାରଣ ଭଗବାନଙ୍କୁ ନିଜ ଆଖିରେ ଦେଖିଲ ଓ ତାଙ୍କ ମୁହଁରେ ଗୀତ ବି ଶୁଣିଲ ।'' ସମସ୍ତ କେନ୍ଦୁଲୀର ବୁଣାକାରମାନଙ୍କୁ ଜୟଦେବ ଭକ୍ତିଭରା ପ୍ରଣାମ ଜଣାଇଲେ । ଗୀତଗୋବିନ୍ଦ ଖଣ୍ଡୁଆ ଓ ଭକ୍ତ ଜୟଦେବ ଜଗନ୍ନାଥଙ୍କର କେତେ ପ୍ରିୟ ଥିଲେ, ଏ କିମ୍ବଦନ୍ତୀ ତା'ର ପ୍ରମାଣ । ଖଣ୍ଡୁଆ ତିଆରି ନସରିଲେ କେବଳ ସାଧାରଣରେ ଜୟଦେବ ଅପଦସ୍ତ ହୋଇଥାନ୍ତେ ତା' ନୁହେଁ, ଜଗନ୍ନାଥ ମଧ ଖଣ୍ଡୁଆ ପିନ୍ଧି ପାରି ନଥାନ୍ତେ । ତେଣୁ ଭକ୍ତର ମାନ ରକ୍ଷା ପାଇଁ ଭଗବାନ ସ୍ୱଦେହରେ ଆସି ଗୀତଗୋବିନ୍ଦ ବୋଲିଥିଲେ ।

ମୈଥିଳୀ କବି ଚନ୍ଦ୍ରଦତ୍ତଙ୍କ ବର୍ଣ୍ଣନାନୁସାରେ କବି ଜୟଦେବଙ୍କ ଜନ୍ମସ୍ଥାନ ହେଉଛି 'ଗ୍ରାମଃ ବ୍ରାହ୍ମଣସଙ୍କୁଳଃ'', ଅର୍ଥାତ୍ ଗୋଟିଏ ବ୍ରାହ୍ମଣ ଶାସନ । ଆଜକୁ ଆଠ ନଅ ଶହ ବର୍ଷ ପୂର୍ବେ କେବଳ ବ୍ରାହ୍ମଣ ଶାସନଗୁଡିକରେ ହିଁ ବିଦ୍ୟା ଚର୍ଚ୍ଚା ବିଶେଷତଃ ସଂସ୍କୃତ ଶାସ୍ତ୍ରଚର୍ଚ୍ଚା ସମ୍ଭବ ହେଉଥିଲା । ଶାସନଗୁଡିକର ଚତୁଷଠୀ ବା ଆଜିକାଲିର 'ଚଉପାଢୀ'ରୁ ଶାସ୍ତ୍ରଚର୍ଚ୍ଚାରେ ଉତ୍ତୀର୍ଣ୍ଣ ହୋଇଥିବା ପଣ୍ଡିତମାନେ ରାଜଦରବାରରେ ସମ୍ମାନାସ୍ପଦ ସ୍ଥାନ ଅଧିକାର କରୁଥିଲେ । ସେହି ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ, ଅଜୟ ତୀରବର୍ତ୍ତୀ ତଥାକଥିତ କେନ୍ଦୁଲୀ ଗ୍ରାମଟି ଆଦୌ ବ୍ରାହ୍ମଣ ଶାସନ ନୁହେଁ କିମ୍ବା ସେହି ଗ୍ରାମର ଚତୁର୍ଦ୍ଦିଗରେ ଜାନୁବଜାର, ପରାନ୍ତଚକ୍, ଭରାଙ୍ଗି, ରାମପୁର, ସୁଗର, ଟିକରବେତା, ବୈଦିପୁର, ସାହାପୁର, ଭାବାନୀପୁର, ରଙ୍ଗପୁର ଏବଂ ଅଜୟ ନଦୀର ଅପରପାର୍ଶ୍ୱରେ ଥିବା ବର୍ଦ୍ଧମାନ ଜିଲ୍ଲାର ନବଗ୍ରାମ, କାଚଲାଦିହି, ରାଉତଦିହି, ଶିବପୁର, ବିଷ୍ଣୁପୁର ଓ ରାଧାନଗର ପ୍ରଭୃତି ଗ୍ରାମଗୁଡିକ ମଧ୍ୟରୁ କୌଣସି ଗୋଟିଏ ହେଲେ ବ୍ରାହ୍ମଣ ଶାସନ ନୁହେଁ ଏବଂ କେବଳ ଶିବପୁର, ବିଷ୍ଣୁପୁର ଓ ତଥାକଥିତ କେନ୍ଦୁଲୀକୁ ଛାଡିଦେଲେ ଅନ୍ୟ ଗ୍ରାମଗୁଡିକରେ ଆଦୌ ବ୍ରାହ୍ମଣବସତି ନାହିଁ ।

ଏଣୁ ନିଃସନ୍ଦେହରେ କୁହାଯାଇପାରେ ଯେ, ତଥାକଥିତ କେନ୍ଦୁଲୀ ଗ୍ରାମଟି ଏକ ଅର୍ବାଚୀନ ଗ୍ରାମ ସେଠାରେ 'କେନ୍ଦୁଲୀ' ବୋଲି କୌଣସି ଗ୍ରାମ ନଥିଲା । ଯଥାର୍ଥରେ ଡକ୍ଟର ସୁକୁମାର ସେନ ତାଙ୍କ 'ବଙ୍ଗଳା ସାହିତ୍ୟେର ଇତିହାସ'ରେ ଯାହା ଲେଖିଛନ୍ତି ତାହା ଅକ୍ଷରତଃ ସତ୍ୟ:

''ଅଜୟେର ଧାରେ ବାଲୁତଟେ ପୌଷସଂକ୍ରାନ୍ତି ସ୍ଥାନେର ମେଲା
ନିକଟେ ଯେ ଗ୍ରାମ ଆଛେ ତାହାର ନାମଓ କେନ୍ଦୁଲୀ ନୟ ।
ଏଖାନେ କେନ୍ଦୁଲୀ ଗ୍ରାମ ଛିଲ ବଲିୟା କୋନ୍ ପ୍ରମାଣଓ ନାଇ ।''

ଚୈତନ୍ୟଙ୍କ ସମସାମୟିକ ବା ତାଙ୍କର ସାଢେ ତିନିଶହ ବର୍ଷ ପର ପର୍ଯ୍ୟନ୍ତ କୌଣସି କାବ୍ୟ, ଗ୍ରନ୍ଥ, ସାହିତ୍ୟ ବା ବୈଷ୍ଣବ ଧର୍ମଗ୍ରନ୍ଥରେ ଏହି କେନ୍ଦୁଲୀର ନାମ ଉଲ୍ଲେଖ ନାହିଁ କିମ୍ବା ମେଳା କଥା କୁହାଯାଇନାହିଁ । ଜୟଦେବଙ୍କ ଏହି ତଥାକଥିତ ଜନ୍ମସ୍ଥାନର ନିକଟବର୍ତ୍ତୀ ଗ୍ରାମର ପ୍ରଭୁ ନିତ୍ୟାନନ୍ଦ ବା ଶ୍ରୀଚୈତନ୍ୟ ତାଙ୍କ ଜୀବନ କାଳରେ ଏ ଗାଁକୁ ଥରେ ବୁଲି ଆସିଛନ୍ତି ବୋଲି କେଉଁଠାରେ ଉଲ୍ଲେଖ କରି ନାହାନ୍ତି । ପରବର୍ତ୍ତୀ ବୈଷ୍ଣବ ସନ୍ଥମାନେ ଅର୍ଥାତ୍ ରୂପ ଗୋସ୍ୱାମୀ, ସନାତନ ଗୋସ୍ୱାମୀ, ଚୈତନ୍ୟ ଚରିତାମୃତର ଲେଖକ କୃଷ୍ଣଦାସ କବିରାଜ କେହି ହେଲେ ଏ ଗ୍ରାମକୁ ଜୟଦେବଙ୍କ ଜନ୍ମସ୍ଥଳୀ ଭାବେ ବୁଲି ଆସିଛନ୍ତି, ଏ କଥା କେଉଁଠାରେ ଲେଖାନାହିଁ । ଅଷ୍ଟାଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ପ୍ରକାଶିତ କୌଣସି ସାହିତ୍ୟ, ଇତିହାସ, କାବ୍ୟ ବା ପୁରାଣରେ ଏହି ଅଜୟ ତୀରବର୍ତ୍ତୀ କେନ୍ଦୁଲୀ କଥା ଉଲ୍ଲେଖ ନାହିଁ କିମ୍ବା ଜୟଦେବ ବଙ୍ଗୀୟ ବୋଲି କୁହାଯାଇନାହିଁ ।

ଅପରପକ୍ଷେ ଡଃ. ଆଶୁତୋଷ ଭଟ୍ଟାଚାର୍ଯ୍ୟଙ୍କ ମତାମତ ଦେଖନ୍ତୁ:

''ଜୟଦେବ ଛିଲେନ୍ ଉଡିୟା ଏବଂ ବୀରଭୂମେର କେନ୍ଦୁଲୀତେ ଅନୁଷ୍ଠିତ ବାତ୍ସରିକ ମେଳା ଆସଲେ ବାଉଲ୍ ମେଲା ଏବଂ ଜୟଦେବେର ଜନ୍ମେର ସଙ୍ଗେ ଏର କୋନ୍ ସମ୍ପର୍କ ନେଇ । ଜୟଦେବ ଲକ୍ଷ୍ମଣ ସେନେର୍ ସଭାକବି ଛିଲେନ୍ ବଲେ ଏଯାବତ ଯେ ସିଦ୍ଧାନ୍ତ ବିଦଗ୍ଧସମାଜେ ଗୃହୀତ ହୟେ ଛିଲ, ତା' ଗ୍ରହଣଯୋଗ୍ୟ ନୟ । ଲକ୍ଷ୍ମଣ ସେନେର୍ ଅନ୍ୟାନ୍ୟ କବିଦେର୍ ସଙ୍ଗେ କବି ଜୟଦେବ ନିଜେର୍ ନାମକେ ଯୁକ୍ତ କରଲେ ଓ ତିନି ଲକ୍ଷ୍ମଣ ସେନେର ସଭାକବି ଛିଲେନ୍, ତା' ପ୍ରମାଣିତ ହୟନା । ପ୍ରାଚୀନ ଯଶସ୍ୱୀ ସଂସ୍କୃତ କବିଦେର୍ ନାମେର୍ ସଙ୍ଗେ ନିଜେର୍ ନାମ ଯୁକ୍ତ କରାର୍ ରୀତି ଏଖନୋ ଉଡିଷ୍ୟାୟ ପ୍ରଚଳିତ ହୟେନେ ।

ସ୍ୱନାମଧନ୍ୟ ଜୟଦେବ– ଗବେଷକ ଅଧ୍ୟାପକ ଡଃ ବନମାଳୀ ରଥ ଏ ବିଷୟରେ ଅନେକ ଗବେଷଣା ପରେ ଲେଖିଛନ୍ତି–

ପୁନଶ୍ଚ ଏହି ସିଦ୍ଧାନ୍ତର ସମର୍ଥନ ନିମନ୍ତେ କେନ୍ଦୁଲୀ ଗ୍ରାମର ରାଧାବିନୋଦ ମନ୍ଦିର ଓ ଗୋଟିଏ ବୈଷ୍ଣବ ମଠ ସହିତ କବି ଜୟଦେବଙ୍କ ସମ୍ପର୍କ ଥିବା କୁହାଯାଇଥାଏ । କଥିତ ଅଛି ଯେ, କବି ଜୟଦେବଙ୍କ ସ୍ମୃତି ଉଦ୍ଦେଶ୍ୟରେ ସେଠାର ମାଘପୂର୍ଣ୍ଣିମା ଦିନ ଏକ ବାର୍ଷିକ ମେଳା ମଧ୍ୟ ଅନୁଷ୍ଠିତ ହୁଏ । ସେ ଯାହା ହେଉ ଏପରି ଯୁକ୍ତିର କୌଣସି ବଳିଷ୍ଠ ଭିତ୍ତିନାହିଁ । କାରଣ ଯେଉଁ ରାଧାବିନୋଦ ମନ୍ଦିରରେ ଜୟଦେବ ପ୍ରତ୍ୟେକଦିନ ପୂଜା କରୁଥିବାର ପ୍ରବାଦ ଅଛି ତାହା ବର୍ଦ୍ଧମାନର ମହାରାଜା କୀର୍ତ୍ତିଚନ୍ଦ୍ରଙ୍କ ମାତା ୧୭୧୪ ଶକାବ୍ଦ

ବା ୧୬୯୨ ଖ୍ରୀଷ୍ଟାବ୍ଦରେ ନିର୍ମାଣ କରିଥିଲେ । ବୈଷ୍ଣବ ମଠଟି ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ବ୍ରଜବାସୀ ରାଧାମୋହନଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ତାଙ୍କର ନବମ ଉତ୍ତରାଧିକାରୀ ବର୍ତ୍ତମାନ ସେହି ମଠର ମହନ୍ତ ଅଛନ୍ତି । ଯଦି ଏହି କେନ୍ଦୁଲୀ ଗ୍ରାମ ଜୟଦେବଙ୍କ ଜନ୍ମସ୍ଥାନ ହୋଇଥାନ୍ତା, ତେବେ ଚୈତନ୍ୟଦେବ ସେହି ସ୍ଥାନ ନିଶ୍ଚିତ ଭାବରେ ପରିଦର୍ଶନ କରିଥାନ୍ତେ । ଚୈତନ୍ୟ ପରବର୍ତ୍ତୀ ବଙ୍ଗଳାର ବିପୁଳ ପଦାବଳୀ ସାହିତ୍ୟରେ ସେହି ପୁଣ୍ୟପୀଠ ବା ମନ୍ଦିରର ଖ୍ୟାତି ବହୁଭାବରେ ଉଦ୍‌ଘୋଷିତ ହୋଇଥାନ୍ତା । ବିଶିଷ୍ଟ ବୈଷ୍ଣବ ଗୋସ୍ୱାମୀମାନଙ୍କର ନିରବଚ୍ଛିନ୍ନ ନୀରବତା ଦୃଷ୍ଟିରୁ ଏହା ନିର୍ବିବାଦରେ ଗ୍ରହଣ କରାଯାଇପାରେ ଯେ, ବୀରଭୂମ ଜିଲ୍ଲାର କେନ୍ଦୁଲୀ ଗ୍ରାମ ଜୟଦେବଙ୍କ ଜନ୍ମସ୍ଥାନ ଭାବରେ ସପ୍ତଦଶ ଶତାବ୍ଦୀର ଶେଷଭାଗରେ ରାଧାବିନୋଦ ମନ୍ଦିରର ନିର୍ମାଣ ପରେ ଉଦ୍ଦେଶ୍ୟମୂଳକ ଭାବରେ ପ୍ରଚାରିତ ହୋଇଅଛି । କପୋଳ କଳ୍ପିତ 'ଜୟଦେବ ଚରିତ' ଉପରେ ଆଧାରିତ ତଥ୍ୟଟି ସମ୍ପୂର୍ଣ୍ଣ ଅନୈତିହାସିକ ଓ ଅନ୍ୟ କୌଣସି ସାହିତ୍ୟିକ ପ୍ରମାଣ ଦ୍ୱାରା ମଧ୍ୟ ସମର୍ଥିତ ନୁହେଁ ।''

ଶ୍ରୀକୃଷ୍ଣଙ୍କୁ ଜୟଦେବ ଏକାଧାରରେ ନିଜର ଇଷ୍ଟଦେବ ମାଧବ ତଥା ଭଗବାନ ବିଷ୍ଣୁଙ୍କ ରୂପରେ ଭକ୍ତିରସର ଉତ୍ସ ଏବଂ ଦିବ୍ୟ ପ୍ରେମିକ ଗୋପୀନାଥ ଭାବେ ମୂର୍ତ୍ତିମାନ ଶୃଙ୍ଗାର ରସ ରୂପେ ବର୍ଣ୍ଣନା କରିଛନ୍ତି । ଭରତଙ୍କ ନାଟ୍ୟଶାସ୍ତ୍ରର ବର୍ଣ୍ଣନା ଭଳି ନାୟକଙ୍କୁ କାନ୍ତ, ବଲ୍ଲଭ ଦୟିତା, ଜିତଉ (ଠକ), ଶଠ, ଭାବେ ମଧ୍ୟ ବର୍ଣ୍ଣନା କରାଯାଇଛି । ସୌନ୍ଦର୍ଯ୍ୟ ରସ, ସମର୍ପଣ ଭାବ, ଶୃଙ୍ଗାର ରସ ଓ ଦିବ୍ୟଭାବର ଏକ ଅପୂର୍ବ ସମନ୍ୱୟ ଓ ସମାହାର ଗୀତଗୋବିନ୍ଦ ମହାକାବ୍ୟରେ ସମ୍ଭବ ହୋଇଛି । ବିଶିଷ୍ଟ ଦ୍ୱୈତବାଦ ଦ୍ୱାରା ଅନୁପ୍ରାଣିତ ଜୟଦେବଙ୍କର ଏହି ଅନନ୍ୟ ସମାହାର ଓ ସମନ୍ୱୟ ପରବର୍ତ୍ତୀ କାଳରେ ଉତ୍କଳୀୟ ବୈଷ୍ଣବମାନଙ୍କର ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱକୁ ଖୋରାକ ଯୋଗାଇ ଥିଲା, ଯେଉଁଥିରେ ଷୋଡଶ ଶତାବ୍ଦୀରେ ରାୟରାମାନନ୍ଦ ମୁଗ୍ଧ କରିଥିଲେ ମହାପ୍ରଭୁ ଶ୍ରୀଚୈତନ୍ୟଙ୍କୁ, ପ୍ରଥମେ ରାଜମହେନ୍ଦ୍ରୀଠାରେ ଓ ପରେ ପୁରୁଷୋତ୍ତମ ଶ୍ରୀକ୍ଷେତ୍ର ପୁରୀଠାରେ ।

ରାଜ୍ୟ ମୁଖ୍ୟ ନିର୍ବାଚନ କମିଶନର
ତୋଷାଳି ପ୍ଲାଜା
ସତ୍ୟନଗର, ଭୁବନେଶ୍ୱର

## ଚେକ୍‌ଡ୍ୟାମ୍ ନିର୍ମାଣ କରାଯାଇ ଚାଷ ପାଇଁ ଜଳ ଯୋଗାଇ ଦିଆଯିବ

ଆସନ୍ତା ୫ବର୍ଷ ମଧ୍ୟରେ ରାଜ୍ୟ ସରକାର ନିଜସ୍ୱ ଅର୍ଥରେ ମରୁଡିପ୍ରବଣ ବିଶେଷକରି ପଥୁରିଆ ଅଞ୍ଚଳରେ ଛୋଟ ଛୋଟ ନଦୀରେ ୧୫ହଜାର ଚେକ୍‌ଡ୍ୟାମ୍ ଏବଂ ବିଭିନ୍ନ ନଦୀ ଓ ଜଳଭଣ୍ଡାରରୁ ୧୭୪ଟି ମେଗା ଲିଫ୍ଟ ପଏଣ୍ଟ ମାଧ୍ୟମରେ ଚାଷ ପାଇଁ ଜଳ ଯୋଗାଇ ଦେବାକୁ ଜଳସମ୍ପଦ ବିଭାଗ ଦ୍ୱାରା ଯୋଜନା ପ୍ରସ୍ତୁତ କରାଯାଇଛି । ଆସନ୍ତା ଜୁନ୍ ମାସ ସୁଦ୍ଧା ୫ହଜାର ଚେକ୍‌ଡ୍ୟାମ୍ ନିର୍ମାଣ କାର୍ଯ୍ୟ ଶେଷ ହେବାର ସମ୍ଭାବନା ରହିଛି । ୨୦୧୧-୧୨ ଆର୍ଥିକ ବର୍ଷରେ ଚେକ୍‌ଡ୍ୟାମ୍ ନିର୍ମାଣ ପାଇଁ ରାଜ୍ୟ ସରକାର ୨୦୦କୋଟି ଟଙ୍କା ଯୋଗାଇ ଦେଇଥିବା ବେଳେ ୨୦୧୨-୧୩ ଆର୍ଥିକ ବର୍ଷରେ ଆଉ ୧୭୫କୋଟି ଟଙ୍କା ଯୋଗାଇ ଦେବା ପାଇଁ ପ୍ରସ୍ତାବ ରଖିଛନ୍ତି । ଛୋଟ ଛୋଟ ନଦୀ ଓ ନାଳ ଯାହାର ଓସାର ୧୦ ମିଟରରୁ ୫୦ମିଟର ମଧ୍ୟରେ ସେହିସବୁ ସ୍ଥାନରେ ଚେକ୍‌ଡ୍ୟାମ୍ ନିର୍ମିତ ହେବ । ତେବେ ୧୦ମିଟରରୁ କମ୍ ଓସାର ଥିବା ନାଳ ମଧ୍ୟରେ ପଞ୍ଚାୟତିରାଜ ବିଭାଗ ପକ୍ଷରୁ ଜୁନ୍ ସୁଦ୍ଧା ଆଉ ୧୦ହଜାର ଚେକ୍‌ଡ୍ୟାମ୍ ନିର୍ମାଣ କରାଯିବ । ଏସବୁ କାମ ବ୍ଲକ୍ ମାଧ୍ୟମରେ କରାଯିବ । ରାଜ୍ୟରେ ଥିବା ବିଭିନ୍ନ ଜଳଭଣ୍ଡାର ଓ ନଦୀମାନଙ୍କରୁ ମେଗା ଲିଫ୍ଟ ଯୋଜନାରେ ୧୭୪ଟି ପ୍ରକଳ୍ପ ନିର୍ମାଣ କରାଯିବ । ଉଚ୍ଚ ଶକ୍ତିସମ୍ପନ୍ନ ମଟର ବସାଯାଇ ପାଇପ୍ ଯୋଗେ କୃଷି ପାଇଁ ୧୦ରୁ ୧୫ କିଲୋମିଟର ପର୍ଯ୍ୟନ୍ତ ପାଣି ଯୋଗାଇ ଦିଆଯିବ । ୨୦୧୨-୧୩ ଆର୍ଥିକ ବର୍ଷରେ ଏହି ଯୋଜନା ପାଇଁ ରାଜ୍ୟ ସରକାର ୧୫୦କୋଟି ଟଙ୍କା ଯୋଗାଇ ଦେବାର ପ୍ରସ୍ତାବ ବଜେଟ୍‌ରେ ରଖିଛନ୍ତି । ଏହି ପ୍ରକଳ୍ପ ପାଇଁ ସ୍ୱତନ୍ତ୍ରଭାବେ ୩୩ କେଭି ବିଦ୍ୟୁତ୍ ଲାଇନ୍ ଟଣାଯିବ । ଗତ ଆର୍ଥିକ ବର୍ଷରେ ଏହି ଯୋଜନାରେ ରାଜ୍ୟ ସରକାର ୫୦କୋଟି ଟଙ୍କା ଯୋଗାଇ ଦେଇଥିଲେ ବୋଲି ଜଳସମ୍ପଦ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ସୁରେଶ ଚନ୍ଦ୍ର ମହାପାତ୍ର ପ୍ରକାଶ କରିଛନ୍ତି ।

# ଗଣର ଗୌଣିକ ଓ ଭାବର ଭାସ୍କର୍ଯ୍ୟ

**ଡକ୍ଟର ନାରାୟଣ ପଣ୍ଡା**

ପୃଥିବୀର ବହୁ ଭାଷାରେ ଅନୁବାଦିତ ଓ ସରସସୁନ୍ଦର ଶବ୍ଦରେ ରଚିତ 'ଗୀତଗୋବିନ୍ଦ' ମହାକବି ଜୀବନ୍ମୁକ୍ତ ଜୟଦେବଙ୍କ ଅନନ୍ୟ ଅନୁପମ ଅମଳିନକୃତି । ସାବଲୀଳ ରାଧାକୃଷ୍ଣଙ୍କ କେଳି ଓ ଦଶ ଅବତାର ପ୍ରସଙ୍ଗ ଯେପରି ବିଦଗ୍ଧ ବିବୁଧଗଣକୁ ଅଭିଭୂତ କରେ, ସେପରି ସଂସ୍କୃତ ବିଶାରଦମାନଙ୍କୁ ମନ୍ତ୍ରମୁଗ୍ଧ କରେ । ପ୍ରେମ ବିଜଡିତ ଭାବବିନିମୟରେ, ସୁଲଳିତ ଯମକପୂର୍ଣ୍ଣ ସୁକୋମଳ ଭାଷା ଭାସ୍କର୍ଯ୍ୟର କଳା କୋଣାର୍କ 'ଗୀତଗୋବିନ୍ଦ' ଉତ୍କଳୀୟ ଜନମାନସର ମହାର୍ଘ ମନ୍ତ୍ରୀମାନ ମଧୁକୋଷ ।

କଳା ଓ ଲୀଳାର ଅଭିନବ କ୍ଷେତ୍ର ଉତ୍କଳ । ପୁରୁଷୋତ୍ତମ କ୍ଷେତ୍ର ବହୁ ଧାର୍ମିକ ପରମ୍ପରାର, ଜୀବନ ଦର୍ଶନର ଲୀଳାଭୂମି । ବୈଷ୍ଣବ କ୍ଷେତ୍ର ଭାବରେ ପୁରୁଷୋତ୍ତମ ପୀଠ ସର୍ବବାଦୀ ସମ୍ମତ । ନୀଳାଚଳ ଧାମ ଅଦୂରରେ ପବିତ୍ର ପ୍ରାଚୀନଦୀ କୂଳରେ ଜୟଦେବଙ୍କ ଜନ୍ମସ୍ଥାନ ବୋଲି ମୈଥିଳୀ ପଣ୍ଡିତ କେଶବ ମିଶ୍ର 'ଅଳଙ୍କାର ଶେଖର' ଗ୍ରନ୍ଥରେ, ମୈଥିଳୀ ପଣ୍ଡିତ ଚନ୍ଦ୍ରଦତ୍ତ 'ଭକ୍ତମାଳା' ଗ୍ରନ୍ଥରେ ଏବଂ ମହାରାଷ୍ଟ୍ରର କବି ମହାପତି 'ଭକ୍ତିବିଜୟ' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ଚନ୍ଦ୍ରଦତ୍ତ 'ଭକ୍ତମାଳା' ଗ୍ରନ୍ଥରେ ସ୍ପଷ୍ଟଭାବରେ ପ୍ରକାଶ କରିଛନ୍ତି-

ଜଗନ୍ନାଥ ପୁରୀପ୍ରାନ୍ତେ ଦେଶେ ଚୈତୋତ୍କଳାଭିଧେ ।<br>
କିନ୍ଦୁବିଲ୍ୱ ଇତି ଖ୍ୟାତୋ ଗ୍ରାମୋ ବ୍ରାହ୍ମଣସଂକୁଳଃ ॥<br>
ତତ୍ରୋତ୍କଳେ ଦ୍ୱିଜୋ ଜାଣେ ଜୟଦେବ ଇତିଶ୍ରୁତଃ ।<br>
ବିଦ୍ୟାଭ୍ୟାସଃ ରତଃ ଶାନ୍ତଃ ପୁରୁଷୋତ୍ତମ ପୂଜକଃ ॥

(ଭକ୍ତମାଳା- ସର୍ଗ- ୩୯)

ମୈଥିଳୀ ପଣ୍ଡିତ 'ଅଳଙ୍କାର ଶେଖର' ଗ୍ରନ୍ଥର ପ୍ରଣେତା କେଶବ ମିଶ୍ର ଯଥାର୍ଥରେ ପ୍ରକାଶ କରିଛନ୍ତି-

''ପ୍ରାକ୍ ପ୍ରତ୍ୟକ ପୃଥିବୀଭୃତୋଃ ପରିଷଦ ପ୍ରଖ୍ୟାତ ସଂଖ୍ୟାବତାଂ<br>
ମହନୀୟା ଭୁତତକ କର୍ଣଶୟା ବିଦ୍ୟବିଦ୍ୟାମଦଂ<br>
ଯେ କେନ୍ଦ୍ରପୁତ୍କଳ ତେ ତବସଭା ସମ୍ଭାବିତାଃ ପଣ୍ଡିତଃ<br>
ତତ୍ର ଶ୍ରୀଜୟଦେବ ପଣ୍ଡିତ କବି ସ୍ତମନ୍ଦ୍ରି ବିନ୍ୟସତି ।''

ଉତ୍କଳ ଭୂପତିଙ୍କ ସଭାମଣ୍ଡନ କରୁଥିବା କବି ପଣ୍ଡିତମାନଙ୍କ ମଧ୍ୟରେ ଜୟଦେବ ସର୍ବଶ୍ରେଷ୍ଠ ଥିଲେ । ଗୋଆଲିଅରବାସୀ ନାଭୋଜୀ ହିନ୍ଦୀରେ 'ଭକ୍ତମାଳା' ରଚନା କରି ୧୫୮୫ରେ ଜୟଦେବଙ୍କ କଥା ଉଲ୍ଲେଖ କରିଥିଲେ । ଉକ୍ତ ଗ୍ରନ୍ଥର ଟୀକାକାର ପ୍ରିୟାଦାସ ଜୟଦେବଙ୍କୁ ପୁରୁଷୋତ୍ତମ ଅଧିବାସୀ ରୂପେ ପ୍ରକାଶ କରିଛନ୍ତି

'ଭକ୍ତିବିଜୟ' ଗ୍ରନ୍ଥରେ ମହାରାଷ୍ଟ୍ରର କବି ମହୀପତି ଜୟଦେବଙ୍କ ଜନ୍ମସ୍ଥାନ ଶ୍ରୀକ୍ଷେତ୍ର ନିକଟବର୍ତ୍ତୀ କେନ୍ଦୁବିଲ୍ୱ ବୋଲି ସୂଚନା ଦେଇଛନ୍ତି । କବି ଯଥାର୍ଥରେ ପ୍ରକାଶ କରିଛନ୍ତି-

''ଜଗନ୍ନାଥ କ୍ଷେତ୍ର ସମୀପ ଜାଣ<br>
କେନ୍ଦୁବିଲ୍ୱ ଗ୍ରାମ ନାମାଭିଧାନ ।<br>
ବ୍ରାହ୍ମଣବଂଶୀ ଅବତାର ପୂର୍ଣ୍ଣ<br>
ତେଥେ ଘେତଲା ଶ୍ରୀବ୍ୟାସେ ।<br>
ତୋନି ଜୟଦେବ କବିନେଂ କବିନ<br>
ଶ୍ରୀଗୀତଗୋବିନ୍ଦ ଗ୍ରନ୍ଥ କଇଲା ।''

ମହାପତି କବି ଜୟଦେବଙ୍କୁ ବ୍ୟାସାବତାର ଭାବରେ ଗ୍ରନ୍ଥରେ ସମ୍ମାନିତ କରିଛନ୍ତି । 'କୁଳଦୀପକ' ଗ୍ରନ୍ଥରେ ଜୟଦେବଙ୍କୁ ଉତ୍କଳବାସୀ ଭାବରେ ଅଭିହିତ କରାଯାଇଛି । 'ସଂସ୍କୃତ କବି ଜୀବନୀ' ଗ୍ରନ୍ଥରେ ଆନ୍ଧ୍ରପ୍ରଦେଶର ପଣ୍ଡିତ ମାଲ୍ଲଜି ସୂର୍ଯ୍ୟନାରାୟଣ ଶାସ୍ତ୍ରୀ 'ଗୀତଗୋବିନ୍ଦ'ର ଲେଖକ ଜୟଦେବ ଏକାଦଶ

ଶତାବ୍ଦୀରେ ଉତ୍କଳର ଜଗନ୍ନାଥକ୍ଷେତ୍ର ନିକଟବର୍ତ୍ତୀ କେନ୍ଦୁବିଲ୍ୱ ଗ୍ରାମବାସୀ ବୋଲି ପ୍ରକାଶ କରିଛନ୍ତି ।

୧୮୬୫ ଖ୍ରୀଷ୍ଟାବ୍ଦରେ ମହାରାଷ୍ଟ୍ରର ହରିଦାସ ହୀରାଚାନ୍ଦ ତାଙ୍କ ଦ୍ୱାରା ସମ୍ପାଦିତ ଏକ ପୁସ୍ତକର ମୁଖବନ୍ଧରେ ମରାଠୀ ଭାଷାରେ ଲେଖିଛନ୍ତି ଯେ ଜୟଦେବ ଶ୍ରୀକ୍ଷେତ୍ର ନିକଟବର୍ତ୍ତୀ କେନ୍ଦୁବିଲ୍ୱ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଲେଖକଙ୍କ ଭାଷାରେ ''ଶ୍ରୀଜଗନ୍ନାଥ କ୍ଷେତ୍ର ପାଶେଂ କେନ୍ଦୁବିଲ୍ୱ ନାମେ ଗ୍ରାମମାଂ କାନ୍ୟକୁବ୍ଜ ଜାତିନା ଭୋଜଦେବ ନାମେ ଏକ ବ୍ରାହ୍ମଣ ହତା । ତେନା ରାଧାନାମେ ସ୍ତ୍ରୀ ହତୀ । ତେଥି ଶ୍ରୀଜୟଦେବ କବି ଉତ୍ପନ୍ନ ଥୟା'' । ହିନ୍ଦୀ ସାହିତ୍ୟର ବିଶିଷ୍ଟ ଆଲୋଚକ ଡକ୍ଟର ପରଶୁରାମ ଚତୁର୍ବେଦୀଙ୍କ ଗ୍ରନ୍ଥ 'ଉତ୍ତର ଭାରତକୀ ସନ୍ଥ ପରମ୍ପରା'ରେ ପ୍ରକାଶ କରିଛନ୍ତି ଜୟଦେବ ଉତ୍କଳର କବି ଥିଲେ । ଯଥାର୍ଥରେ ଗବେଷକଙ୍କ ମତରେ– 'ଇନକା (ଜୟଦେବକା) ଜନ୍ମସ୍ଥାନ ବାସ୍ତବ ମେ କେନ୍ଦୁଲୀ ଶାସନ ଗାଓ ମେ ହୈ, ଯୋ ଓଡ଼ିଶା ପ୍ରାନ୍ତମେ ପୁରୀକେ ନିକଟ କିସୀ ପ୍ରାଚୀ ନଦୀପର ଅବସ୍ଥିତ ହୈ । ଇନକେ ଉଡିୟା ହୋନେକା ପ୍ରମାଣ ଇସ୍ ବାତସେ ଭୀ ଦୀଖଲାୟା ଜାତା ହୈ କି, ଓ୍ୱ ହାଁ କେ ଲୋଗ୍ ଇସ୍ କବିସେ ଅଧିକ ପରିଚିତ ଜାନ ପଡତେ ହୈ ।''

ପଞ୍ଚସଖା ଯୁଗର କବି ମାଧବ ପଟ୍ଟନାୟକଙ୍କ 'ବୈଷ୍ଣବ ଲୀଳାମୃତ' ଗ୍ରନ୍ଥରେ କବି ଜୟଦେବଙ୍କ ପରିଚୟ ବିସ୍ତୃତ ଭାବରେ ରହିଛି । ପଦ୍ମନାଭ ତ୍ରିପାଠୀ 'ବୈଷ୍ଣବଲୀଳାମୃତ' ଗ୍ରନ୍ଥରେ ଶ୍ରୀଜୟଦେବ' ଶୀର୍ଷକ ପ୍ରବନ୍ଧରେ ଜୟଦେବଙ୍କ ଜନ୍ମସ୍ଥାନ ସମ୍ପର୍କରେ ବିଶଦ ଭାବରେ ଆଲୋଚନା କରିଛନ୍ତି । ଯଥାର୍ଥରେ କବି ମାଧବ ପଟ୍ଟନାୟକଙ୍କ ଭାଷାରେ–

''ବିପ୍ର ସେ ଜୟଦେବ ନାମ । କ୍ଷେତ୍ରବରକୁ ଆଗମନ ।
କେନ୍ଦୁଲୀ ଶାସନ ତା ଗ୍ରାମ । ପ୍ରାଚୀନଦୀର ତଟପୁଣ ।
ନିଆଳି ମାଧବ ସମୀପେ । ଭଗତି କଲା ନାନା ରୂପେ ।
ଶାସ୍ତ୍ର ପୁରାଣେ ବିଚକ୍ଷଣ । କବିତ୍ୱ ମାର୍ଗେ ତା'ର ମନ ।
ଗୀତ ସେ ରଚିବି ବୋଇଲା । କ୍ଷେତ୍ରବାସକୁ ମନ ଦେଲା ।
ଶ୍ରୀଜଗନ୍ନାଥ ଦାସ ସମୀପେ । ଶୁଦ୍ଧ ସାତ୍ତ୍ୱିକ ମତିଭାବେ ।
ରଚିଲା ଶ୍ରୀଗୀତଗୋବିନ୍ଦ । ଲଭିଲା ପରମ ଆନନ୍ଦ ।
ଶ୍ରୀରାଧା ମାଧବର ଲୀଳା । ମଧୁର ସ୍ୱରରେ ଗାଇଲା ।
ପତ୍ନୀ ତାହାର ପଦ୍ମାବତୀ । ଗୀତର ତାଳେ ସେ ନୃତ୍ୟନ୍ତି ।

(ବୈଷ୍ଣବ ଲୀଳାମୃତ– ଦ୍ୱିତୀୟ ଅଧ୍ୟାୟ)

କବି ମାଧବ ପଟ୍ଟନାୟକ 'ବୈଷ୍ଣବ ଲୀଳାମୃତ' ଗ୍ରନ୍ଥରେ କେବଳ ଜୟଦେବଙ୍କ ଜନ୍ମସ୍ଥାନ ସମ୍ପର୍କରେ ଉଲ୍ଲେଖ କରିଛନ୍ତି ତା'ନୁହେଁ, ସେ ଚୈତନ୍ୟଙ୍କ ଆଗମନକୁ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ 'ଗୀତଗୋବିନ୍ଦ'ର ମହତ୍ତ୍ୱ ଓ ବୈଶିଷ୍ଟ୍ୟକୁ ସୁନ୍ଦର ଭାବରେ ଉପସ୍ଥାପନ କରିଛନ୍ତି । ବୈଷ୍ଣବ ଲୀଳାମୃତ ଗ୍ରନ୍ଥର ଅଷ୍ଟମ ଅଧ୍ୟାୟରେ କବି ପ୍ରକାଶ କରିଛନ୍ତି– ''ପ୍ରଭୁ ଶ୍ରୀଚୈତନ୍ୟ ତାଙ୍କର ଶିଷ୍ୟବର୍ଗ ଏବଂ ପଞ୍ଚସଖା ସାଧକମାନଙ୍କ ସହିତ ଜୟଦେବଙ୍କ ଗ୍ରାମ କେନ୍ଦୁବିଲ୍ୱ ଏବଂ ସନ୍ନିକଟ ନିଆଳିମାଧବ ଗ୍ରାମରେ କୀର୍ତ୍ତନ କରି କୋଣାର୍କର ଚନ୍ଦ୍ରଭାଗା ତୀର୍ଥରେ ବୁଡ ପକାଇଥିଲେ । ଯଥାର୍ଥରେ କବିଙ୍କ ଭାଷାରେ–

''ନିଆଳି ମାଧବେ ଗମନ । ପ୍ରାଚୀରେ ଅଙ୍ଗ ପ୍ରଖ୍ୟାଳନ ।
ମାଧବେ ଭଗତି ଅର୍ପଣ । କୀର୍ତ୍ତନ ରାସ ପ୍ରସାରଣ ।
ବହୁତ ଲୋକ ମେଳହୋନ୍ତି । ମକର ମେଳା ସେ କରନ୍ତି ।
ଗୀତଗୋବିନ୍ଦ ନୃତ୍ୟରସେ । ଜୟଦେବର ପରଶଂସେ ।
କେନ୍ଦୁଲୀ ଗ୍ରାମର ମଧ୍ୟେଣ । କୀର୍ତ୍ତନ ରସ ପ୍ରସାରଣ ।
ତହୁଁ ଗମନ୍ତି ଚନ୍ଦ୍ରଭାଗା । ପଡଇ ମୁହଁ ତହିଁ ରଙ୍ଗା ।''

(ବୈଷ୍ଣବ ଲୀଳାମୃତ: ଅଷ୍ଟମ ଅଧ୍ୟାୟ)

୧୯୧୭ ମସିହାରେ ସ୍ୱର୍ଗତଃ ଐତିହାସିକ ଜଗବନ୍ଧୁ ସିଂହ ଉତ୍କଳ ସାହିତ୍ୟ ସମାଜର ଏକ ସାଧାରଣ ଅଧିବେଶନରେ ''ପ୍ରାଚୀନ ଉତ୍କଳର ସଂସ୍କୃତ ସାହିତ୍ୟ ଓ ଜୟଦେବ'' ଶୀର୍ଷକ ପ୍ରବନ୍ଧ ପାଠକରି ସେଥିରେ ଶ୍ରୀଗୀତଗୋବିନ୍ଦ ପ୍ରଣେତା ଶ୍ରୀଜୟଦେବ ପ୍ରାଚୀ ତୀରବର୍ତ୍ତୀ କେନ୍ଦୁଲୀ(କେନ୍ଦୁବିଲ୍ୱ)ରେ ଜନ୍ମଗ୍ରହଣ କରିଥିବା ତଥ୍ୟ ପ୍ରକାଶ କରିଥିଲେ ।

କବି ସାର୍ବଭୌମଂ ବାଣଭଟ୍ଟ ମହାକବି ଓ ଭବଭୂତି, ବାଳବାଲ୍ମୀକି ମୁରାରି, ପ୍ରସିଦ୍ଧ ଉତ୍କଳୀୟ ଜ୍ୟୋତିଷ ଓ ସ୍ମୃତିକାର ଶ୍ରୀ ଶତାନନ୍ଦ ଆଚାର୍ଯ୍ୟ, ଉତ୍କଳୀୟ କବିବର ଗୋବର୍ଦ୍ଧନାଚାର୍ଯ୍ୟ ଓ କବିରାଜ ରାଜି ମୁକୁଟାଳଙ୍କାରହୀର ଶ୍ରୀହର୍ଷଙ୍କ ପଦାଙ୍କ ଅନୁସରଣ କରି 'କବିରାଜ–ରାଜ' ଶ୍ରୀଜୟଦେବ ସ୍ୱୀୟ ଅମରକୃତି ଶ୍ରୀଗୀତଗୋବିନ୍ଦର ଶେଷ ସର୍ଗର ଶେଷାଂଶରେ ସ୍ୱୀୟ ପିତା ଭୋଜଦେବ ଓ ମାତା ରାମାଦେବୀଙ୍କ ନାମ ଉଲ୍ଲେଖ କରିଛନ୍ତି । କବି ଜୟଦେବ 'ଶ୍ରୀଗୀତଗୋବିନ୍ଦ'ର ଶେଷ ସର୍ଗରେ ପ୍ରକାଶ କରିଛନ୍ତି–

ଶ୍ରୀ ଭୋଜଦେବପ୍ରଭବସ୍ୟ ରାମାଦେବୀସୁତ ଶ୍ରୀଜୟଦେବସ୍ୟ
ପରାଶରାଦି ପ୍ରିୟବର୍ଗ କଣ୍ଠେ ଶ୍ରୀଗୀତଗୋବିନ୍ଦ କବିତ୍ୱମସ୍ତୁ ।

(ଶ୍ରୀଗୀତଗୋବିନ୍ଦମ୍ ଦ୍ୱାଦଶ ସର୍ଗ)

ଶ୍ରୀଗୀତଗୋବିନ୍ଦର କେତେକ ଟୀକାରେ ଉକ୍ତ ଶ୍ଳୋକର ବ୍ୟାଖ୍ୟା ଦିଆଯାଇ ନଥିବାରୁ ଏହାକୁ କେତେକ ଗବେଷକ, ଐତିହାସିକ ପ୍ରମାଦପୂର୍ଣ୍ଣ ବୋଲି ବିବେଚନା କରନ୍ତି । କିନ୍ତୁ ଚତୁର୍ଦ୍ଦଶ ଶତାବ୍ଦୀରେ ଆବିର୍ଭୂତ ପ୍ରସିଦ୍ଧ ମୈଥିଳୀ ପଣ୍ଡିତ ଜଗଦ୍ଧର କୃତ ଶ୍ରୀଗୀତଗୋବିନ୍ଦର 'ସାରଦୀପିକା' ନାମ୍ନୀ ଟୀକା ଏବଂ ଉକ୍ତ ଶତାବ୍ଦୀର ଶେଷ ଭାଗରେ ଖ୍ୟାତିଲାଭ କରିଥିବା ଉତ୍କଳୀୟ କବିରାଜ ନାରାୟଣ ଦାସଙ୍କ କୃତ ବହୁ ପ୍ରଚଳିତ ସର୍ବାଙ୍ଗ ସୁନ୍ଦରୀ ଟୀକାରେ ଉକ୍ତ ଶ୍ଳୋକର ବିଶଦାର୍ଥ ସନ୍ନିବିଷ୍ଟ ଥିବାରୁ ଏହାର ପ୍ରାମାଣିକତା ଗ୍ରହଣୀୟ । ବିଶିଷ୍ଟ ଗବେଷକ, ଐତିହାସିକ କେଦାର ନାଥ ମହାପାତ୍ର, 'ଜୟଦେବ ଓ ଶ୍ରୀଗୀତଗୋବିନ୍ଦ' ପୁସ୍ତକରେ ପ୍ରାମାଣିକ ତଥ୍ୟକୁ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି ।

ଶ୍ରୀଜୟଦେବଙ୍କ ଅମର କୃତି 'ଶ୍ରୀଗୀତଗୋବିନ୍ଦମ୍'ର ପ୍ରଥମ ମଙ୍ଗଳାଚରଣ ଶ୍ଳୋକ ପରବର୍ତ୍ତୀ ଦ୍ୱିତୀୟ ଶ୍ଳୋକରେ ସ୍ୱୀୟ ପତ୍ନୀ ପଦ୍ମାବତୀଙ୍କ ଗଭୀର କୃଷ୍ଣଭକ୍ତି ଓ ଗୀତଲୟ-ଗାନ-ତାନ ନର୍ତ୍ତନକଳା କୌଶଳ ମର୍ମିଳ ଭାବରେ ପ୍ରକାଶ କରିଛନ୍ତି । ଗୀତଗୋବିନ୍ଦରେ କବିଙ୍କ ଭାଷାରେ-

''ବାଗ୍‌ଦେବତା- ଚରିତ ଚିତ୍ରିତ-ଚିତ୍ତପଦ୍ମା<br>
ପଦ୍ମାବତୀ ଚରଣଚାରଣ ଚକ୍ରବର୍ତ୍ତୀ<br>
ଶ୍ରୀବାସୁଦେବ ରତିକେଳି କଥା ସମେତ

ମେତଂ କରୋତି ଜୟଦେବ କବିଃ ପ୍ରବନ୍ଧମ୍ । ଚତୁର୍ଦ୍ଦଶ ଶତାବ୍ଦୀରେ ଆବିର୍ଭୂତ ଧୃତି ଦାସ ସ୍ୱୀୟ ''ସନ୍ଦର୍ଭ ଦୀପିକା'' ଟୀକାରେ ପଦ୍ମାବତୀଙ୍କୁ ଜୟଦେବଙ୍କ ଭାର୍ଯ୍ୟାରୂପେ ଗ୍ରହଣ କରିଛନ୍ତି ।

ଏଗାରବର୍ଷ ବୟସରେ କବି ପିତୃମାତୃ ସ୍ନେହରୁ ବଞ୍ଚିତ ହୋଇଥିଲେ । ଗୃହତ୍ୟାଗ କରି ଜୟଦେବ ସ୍ୱକ୍ଷେତ୍ରରୁ ଶ୍ରୀକ୍ଷେତ୍ରକୁ ଚାଲି ଆସିଥିଲେ । ଜଣେ ଅନୁରକ୍ତ ମାଧବ ଭକ୍ତ ଭାବରେ କବି ନିଜକୁ ପ୍ରତିପାଦିତ କରିଥିଲେ ।

'ଗୀତଗୋବିନ୍ଦ' ରାଧାକୃଷ୍ଣଙ୍କ ଶୃଙ୍ଗାରଲୀଳାରେ ଯେପରି ରସୋତ୍ତୀର୍ଣ୍ଣ, ଭକ୍ତିରସରେ ସେପରି ଋଦ୍ଧିମନ୍ତ ।'ଗୀତଗୋବିନ୍ଦ'ର ମଧୁର-କୋମଳ-କାନ୍ତ ପଦାବଳୀ ଅୟସକାନ୍ତ ଲୌହଦଣ୍ଡକୁ ଆକର୍ଷଣ କଲାପରି ପାଠକକୁ ଅନାୟାସରେ ଆକୃଷ୍ଟ କରେ ଓ ଆମୋଦିତ କରେ । ଜର୍ମାନ୍‌ର ଜଣେ ପ୍ରସିଦ୍ଧ ପଣ୍ଡିତ ଡ. ମୌରିସ୍ ୱିଣ୍ଟରନିଜ୍ (Dr. Maurice Winternitz) 'ଗୀତଗୋବିନ୍ଦ' ସମ୍ପର୍କରେ ପ୍ରକାଶ କରିଛନ୍ତି- "It is true that Jayadeva belongs to the greatest poetical genius of india. it is, however astonishing that he was able to combine so much passion and sentiment of love, so much alliteration in language, that often resounds as pure music in our ears, with such an ornate and yet artificial a form. it is no wonder that in india the poem enjoys unusual popularity and has always found admirers even outside India."

ରାଧାକୃଷ୍ଣଙ୍କ କେଳି ପ୍ରସଙ୍ଗ 'ଗୀତଗୋବିନ୍ଦ'ର ବିଷୟବସ୍ତୁ । ଗୀତଗୋବିନ୍ଦ କାବ୍ୟ ୧୨ଟି ସର୍ଗ, ୨୪ଟି ଗୀତ ଓ ୭୨ଟି ଶ୍ଳୋକରେ ବିଭକ୍ତ । କାବ୍ୟର ଗୀତମାନଙ୍କ ମଧ୍ୟରୁ ପ୍ରଥମ ଗୀତଟି ୧୧ପଦରେ, ଦଶମ ଗୀତଟି ୫ ପଦରେ ଓ ଅବଶିଷ୍ଟ ୨୨ଟି ଗୀତ ୮ପଦରେ ବିଭକ୍ତ । ଆଠପଦ ବିଶିଷ୍ଟ ଗୀତ ଏଥିରେ ସନିବିଷ୍ଟ ଥିବାରୁ ଏହାକୁ ଅଷ୍ଟପଦୀ ବୋଲି କୁହାଯାଏ । ଉକ୍ତ ଗୀତଗୁଡିକ ମାଳବ, ଗୁର୍ଜରୀ, ବସନ୍ତ, ଦେଶୀବରାଡୀ, ରାମକେରୀ, ଗୁଣ୍ଡକେରୀ, ବେଶାଖ୍ୟା, କର୍ଣ୍ଣାଟ, ଭୈରବୀ, ବିଳାସ ଆଦି ଦଶଗୋଟି ରାଗରେ ଲିଖିତ ।

'ଗୀତଗୋବିନ୍ଦ' କାବ୍ୟରେ କବି ପରମେଶ୍ୱରଙ୍କୁ ଶ୍ରୀକୃଷ୍ଣ ରୂପରେ ଅଭିହିତ କରିବା ସହିତ ଦଶାବତାର ସ୍ତବ ରଚନା କରି ବନ୍ଦନା କରିଛନ୍ତି ।

ସ୍ୱୟଂ ଭଗବାନ 'କୃଷ୍ଣ' ଅବତାରରେ ତାଙ୍କର ମଥୁରା ଲୀଳା ପ୍ରମୁଖ ବହୁବିଧ ଲୀଳା ମଧ୍ୟରେ ବୃନ୍ଦାବନରେ ଶ୍ରୀରାଧାଙ୍କ ସହିତ ଯେଉଁ ପ୍ରଣୟଲୀଳା ସମ୍ପାଦନ କରିଥିଲେ, ତାହାକୁ କବି ସୁନ୍ଦର ଭାବରେ 'ଗୀତଗୋବିନ୍ଦ'ରେ ଉପସ୍ଥାପନ କରିଛନ୍ତି । ବୈଷ୍ଣବ ଭକ୍ତମାନଙ୍କ ମତରେ ଜୀବାତ୍ମା ପରମାତ୍ମାଙ୍କ ପ୍ରତି ଯେପରି ଆକୃଷ୍ଟ ପରମାତ୍ମା ଜୀବାତ୍ମା ପ୍ରତି ସେହିପରି ଆକୃଷ୍ଟ । ଏହି ପାରସ୍ପରିକ ପ୍ରେମ ଗୀତଗୋବିନ୍ଦ କାବ୍ୟରେ ରୂପକ ଛଳରେ ପ୍ରଦତ୍ତ ବୋଲି ବୈଷ୍ଣବମାନଙ୍କର ମତ ।

'ଗୋବିନ୍ଦ'ଙ୍କ ସମ୍ପର୍କୀୟ ଗୀତ ସମ୍ବଳିତ କାବ୍ୟ ଗୀତଗୋବିନ୍ଦ । କଥାବସ୍ତୁ ସମ୍ପର୍କୀୟ କେତେଗୁଡିଏ ପଦ୍ୟାଂଶ ମଧ୍ୟରେ ଚବିଶଗୋଟି ଗୀତକୁ ପାଥେୟ କରି ଗୀତଗୋବିନ୍ଦ ଚଳଚଞ୍ଚଳ । ତିନିଗୋଟି ଚରିତ୍ରକୁ ଉପଜୀବ୍ୟ କରି ଗୀତଗୋବିନ୍ଦ ରଚିତ । ଶ୍ରୀରାଧା, ଶ୍ରୀକୃଷ୍ଣ ଏବଂ ଦୂତୀ ଗୀତଗୋବିନ୍ଦର ପ୍ରମୁଖ ଚରିତ୍ର । କଥାବସ୍ତୁର ସ୍ଥାନ ଯମୁନା ତଟବର୍ତ୍ତୀ ବୃନ୍ଦାବନ, ସମୟ ବସନ୍ତଋତୁ । ଗୀତଗୋବିନ୍ଦର ଗୀତରେ ପ୍ରାୟ ଆଠଗୋଟି

ଲେଖାଏଁ ପଦ ଥିବାରୁ ଏହାର ଅନ୍ୟନାମ 'ଅଷ୍ଟପଦୀ' କାବ୍ୟ । ଭାଷାଗତ ବୈଶିଷ୍ଟ୍ୟ ଗୀତଗୋବିନ୍ଦକୁ ସର୍ବତ୍ର ଜନପ୍ରିୟ କରିଛି ।

ମଧୁର କୋମଳ କାନ୍ତ ପଦାବଳୀର ଅନନ୍ୟ କୃତି ଗୀତଗୋବିନ୍ଦ ଜୟଦେବଙ୍କ ଲେଖନୀର ତାରକଶିକାମ । ବୈବର୍ତ୍ତ ରୀତିରେ ରଚିତ ଚବିଶଟି ଗୀତର ସାଙ୍ଗୀତିକତା ଯେପରି ହୃଦୟସ୍ପର୍ଶୀ ସେପରି ମର୍ମିଳ । ଗୀତଗୋବିନ୍ଦ ପୂର୍ବରୁ ରାଧା ଧର୍ମ ସାହିତ୍ୟରେ ସ୍ଥାନ ପାଇଥିଲେ ମଧ ଜୟଦେବ 'ଗୀତଗୋବିନ୍ଦ'ରେ ରାଧାଙ୍କୁ ଏକ ମୁଖ୍ୟସ୍ଥାନଦେଇ ନୂତନ ଦିଗର ଉନ୍ମୋଚନ କରିଛନ୍ତି । ଗୀତଗୋବିନ୍ଦର ମୁଖ୍ୟ ଉଦ୍ଦେଶ୍ୟ ବିଷୟରେ ଜୟଦେବ ପ୍ରକାଶ କରିଛନ୍ତି ।

''ଯଦି ହରି ସ୍ମରଣେ ସରସଂ ମନୋ ।
ଯଦି ବିଳାସ କଳାସୁ କୁତୂହଳମ୍ ॥
ମଧୁର କୋମଳ କାନ୍ତ ପଦାବଳୀଂ
ଶୃଣୁ ତଦା ଜୟଦେବ ସରସ୍ୱତୀମ୍ ॥

ଯଦି ହରିଙ୍କ ସ୍ମରଣ ଦ୍ୱାରା ମନକୁ ସରସ କରିବାକୁ କାମନା କର, ଯଦି ହରିଙ୍କ ବିଳାସ କଳା ଜାଣିବା ଲାଗି କୌତୁହଳ ଅଛି, ତେବେ କବି ଜୟଦେବଙ୍କ ରଚିତ ମଧୁର କୋମଳ କାନ୍ତପଦାବଳୀ 'ଗୀତଗୋବିନ୍ଦ' ଶ୍ରବଣ କର ।

ବାରଗୋଟି ସର୍ଗରେ ରସୋତ୍ତୀର୍ଣ୍ଣ 'ଗୀତଗୋବିନ୍ଦ' କୃଷ୍ଣଭକ୍ତିର ଏକ ଶାଶ୍ୱତ ସ୍ରୋତସ୍ୱିନୀ । 'ଗୀତଗୋବିନ୍ଦ'ର ପ୍ରଥମ ସର୍ଗର ନାମ ସାମୋଦ ଦାମୋଦର– ଯେଉଁଠି ଗୋପୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କ କେଳି ବର୍ଣ୍ଣନା, ଦ୍ୱିତୀୟ ସର୍ଗର ନାମ ଅକ୍ଳେଶ କେଶବ– ଯେଉଁଠି ଶ୍ରୀକୃଷ୍ଣଙ୍କ ପ୍ରତି ରାଧାଙ୍କ ଅଭିମାନର ସୂଚନା ତୃତୀୟ ସର୍ଗର ନାମ ମୁଗ୍ଧ ମଧୁସୂଦନ– ଯେଉଁଠି ଶ୍ରୀକୃଷ୍ଣଙ୍କର ରାଧା ଅନୁଚିନ୍ତାର ବର୍ଣ୍ଣନା, ଚତୁର୍ଥ ସର୍ଗର ନାମ ସ୍ନିଗ୍ଧ ମଧୁସୂଦନ ଯେଉଁଠି ସଖୀ ସହିତ ଶ୍ରୀକୃଷ୍ଣଙ୍କର ମନ୍ତ୍ରଣା, ପଞ୍ଚମ ସର୍ଗର ନାମ ନାଗର ନାରାୟଣ– ଯେଉଁଠି ଶ୍ରୀକୃଷ୍ଣଙ୍କ ଅଦର୍ଶନରେ ରାଧାଙ୍କ ଅନୁଚିନ୍ତାର ବର୍ଣ୍ଣନା, ଅଷ୍ଟମ ସର୍ଗର ନାମ ଖଣ୍ଡିତା ବର୍ଣ୍ଣନା– ଯେଉଁଠି କୃଷ୍ଣ ଅନାଗମରେ ରାଧାଙ୍କର କୋପ, ନବମ ସର୍ଗର ନାମ କଳହାନ୍ତରିତା– ଯେଉଁଠି ରାଧାଙ୍କର କୋପ ଦୂର ନିମନ୍ତେ ସଖୀମାନଙ୍କର ଉଦ୍ୟମ, ଦଶମ ସର୍ଗର ନାମ ମୁଗ୍ଧ ମାଧବ– ଯେଉଁଠି ଶ୍ରୀକୃଷ୍ଣଙ୍କର ମାନଭଞ୍ଜନ, ଏକାଦଶ ସର୍ଗର ନାମ ଅଭିସାରିକା ବର୍ଣ୍ଣନା– ଯେଉଁଠି ରାଧାକୃଷ୍ଣଙ୍କର ପାରସ୍ପରିକ ଅନୁରାଗ ବୃଦ୍ଧି ନିମନ୍ତେ ସଖୀମାନଙ୍କର ପ୍ରଯତ୍ନ ଏବଂ ଶେଷ ଦ୍ୱାଦଶ ସର୍ଗର ନାମ ସୁପ୍ରୀତ ଦାମୋଦର– ଯେଉଁଠିରାଧାକୃଷ୍ଣଙ୍କର ମିଳନ ବର୍ଣ୍ଣନା କରାଯାଇଛି ।

'ଗୀତଗୋବିନ୍ଦ'ର ପ୍ରାରମ୍ଭରେ ସ୍ଥାନିତ ଦଶାବତାର ସ୍ତୋତ୍ର ଶ୍ରୀକୃଷ୍ଣଙ୍କ ମହିମାର ଏକ ଜ୍ୱଳନ୍ତ ନିଦର୍ଶନ । 'ଗୀତଗୋବିନ୍ଦ'ରେ ଶ୍ରୀକୃଷ୍ଣଙ୍କୁ ଅନେକ ନାମରେ ନାମିତ କରାଯାଇଛି । ମାଧବ, ବାସୁଦେବ, ହରି, କେଶବ ଓ ଜଗଦୀଶ । ଜଗଦୀଶଙ୍କ ଦଶବିଧ ରୂପ ଥିବାରୁ ତାଙ୍କୁ 'ଦଶାକୃତିକୃତ' ଭାବରେ କବି ପ୍ରକାଶ କରିଛନ୍ତି । 'ଜଗଦୀଶ' ଶବ୍ଦର ବ୍ୟବହାରରୁ ଶ୍ରୀକୃଷ୍ଣଙ୍କର ସର୍ବବ୍ୟାପକତା ଓ ଜଗନ୍ନାଥ କଳ୍ପନା ଦୃଢୀଭୂତ ହେଉଛି । ଜଗଦୀଶଙ୍କର ଦଶବିଧ ରୂପ ପ୍ରକୃତରେ ବିଷ୍ଣୁଙ୍କର ଦଶଟି ଅବତାର । ଶ୍ରୀଗୀତଗୋବିନ୍ଦର କୃଷ୍ଣ ଅବତାର ନୁହଁନ୍ତି, ସେ ହେଉଛନ୍ତି ପୂର୍ଣ୍ଣାବତାର ବା ଅବତାରୀ । 'ଗୀତଗୋବିନ୍ଦ'ର ଜଗଦୀଶ କୃଷ୍ଣ ଯଥାର୍ଥରେ ଓଡ଼ିଶାର ରାଷ୍ଟ୍ରଦେବତା ଜଗନ୍ନାଥ । ପୁରୁଷୋତ୍ତମ ଜଗନ୍ନାଥତତ୍ତ୍ୱ ଜୟଦେବଙ୍କୁ ଗୀତଗୋବିନ୍ଦ ରଚନା ନିମନ୍ତେ ପ୍ରେରଣା ପ୍ରଦାନ କରିଥିଲା ।

'ଗୀତଗୋବିନ୍ଦ' ଉପରେ ପ୍ରଣୀତ ହୋଇଥିବା ୩୧ ଗୋଟି ଟୀକା ଅଦ୍ୟାବଧି ଗବେଷକମାନଙ୍କ ଦୃଷ୍ଟିକୁ ଆସିଛି । ଏକତ୍ରିଂଶ ସଂଖ୍ୟକ ଟୀକା ବ୍ୟତୀତ ଅନ୍ୟାନ୍ୟ କେତେକ ଟୀକା ରହିଛି ବୋଲି ଆଲୋଚକଗଣ ମତପ୍ରକାଶ କରିଥାନ୍ତି । ଏହାହିଁ ହେଉଛି ଗୀତଗୋବିନ୍ଦ' ଲୋକପ୍ରିୟତାର ବଳିଷ୍ଠ ପ୍ରମାଣ । ଭାରତବର୍ଷର ଅନ୍ୟକୌଣସି କାବ୍ୟ ଉପରେ ଏତେ ସଂଖ୍ୟକ ଟୀକା ପ୍ରଣୀତ ହେବାର ଦୃଷ୍ଟିଗୋଚର ହୁଏନାହିଁ । ଭାରତୀୟ ଭାଷାରେ ରଚିତ ବହୁ କୃଷ୍ଣକାବ୍ୟ ତଥା ସଂଗୀତ ଗ୍ରନ୍ଥରେ 'ଗୀତଗୋବିନ୍ଦ'ର ପ୍ରଭାବ ପରିଲକ୍ଷିତ ହୋଇଥାଏ । କେବଳ ଭାରତୀୟ ପଣ୍ଡିତ ନୁହନ୍ତି, ସାର ଉଇଲିୟମ ଜୋନ୍ସଙ୍କ ତୁଲ୍ୟ ପାଶ୍ଚାତ୍ୟ ମନୀଷୀମାନେ ଉକ୍ତ କାବ୍ୟର ଭୂରି ଭୂରି ପ୍ରଶଂସା କରିଛନ୍ତି । କାବ୍ୟର ଗୌରବ ତଥା ମହାନ୍ ବୈଶିଷ୍ଟ୍ୟକୁ ପ୍ରତିପାଦନ କରିବାକୁ ଯାଇ କବି କାବ୍ୟର ଶେଷଭାଗରେ ପ୍ରକାଶ କରିଛନ୍ତି–

''ଯଦ୍ଗାନ୍ଧର୍ବ କଳାସୁ କୌଶଳମନୁଧ୍ୟାନଂଚ ଯଦ୍ ବୈଷ୍ଣବ
ଯଦ୍ ଶୃଙ୍ଗାର ବିବେକତତ୍ତ୍ୱମପିୟଦ୍
କାବ୍ୟେଷୁ ଲୀଳାୟିତମ୍
ତତ୍ ସର୍ବଂ ଜୟଦେବ ପଣ୍ଡିତ କବେଃ
କୃଷ୍ଣୈକତା ନାତ୍ମନଃ
ସାନନ୍ଦାଃ ପରିଶୋଧୟନ୍ତୁ ସୁଧିୟଃ
ଶ୍ରୀଗୀତଗୋବିନ୍ଦତଃ ।''

'ଗୀତଗୋବିନ୍ଦ'ରେ ଗାନ୍ଧର୍ବକଳା ବା ସଙ୍ଗୀତ ବିଦ୍ୟା, ବୈଷ୍ଣବ ଶାସ୍ତ୍ରୋକ୍ତ ଉଜ୍ଜ୍ୱଳରସ ତଥା ରାଧାକୃଷ୍ଣ ଭକ୍ତିମୂଳକ ବୈଷ୍ଣବୀୟ ଦର୍ଶନର ଏକତ୍ର ସୁସମାବେଶ ଘଟିଛି । ସଙ୍ଗୀତ ବିଦ୍ୟା, ଅଧ୍ୟାତ୍ମିକ ବିଦ୍ୟା, ଭକ୍ତି ତତ୍ତ୍ୱ, ରସଶାସ୍ତ୍ରୀୟ ତତ୍ତ୍ୱ, ସାହିତ୍ୟ ବିଦ୍ୟାର ସୁବର୍ଣ୍ଣ ସମନ୍ୱୟ 'ଗୀତଗୋବିନ୍ଦ' ।

ସାଙ୍ଗୀତିକ ଉତ୍କର୍ଷ ଦୃଷ୍ଟିରୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଦେଶରେ 'ଗୀତଗୋବିନ୍ଦ'ର ଲୋକପ୍ରିୟତା ଯଥେଷ୍ଟ ଅଧିକ । ବହୁଖ୍ୟାତି ସମ୍ପନ୍ନ ସଙ୍ଗୀତଜ୍ଞଙ୍କ ପାଇଁ କାବ୍ୟଟି ଆଲୋଚନାର ବିଷୟ ହୋଇଛି । ଏ ପ୍ରସଙ୍ଗରେ ଉଲ୍ଲେଖ କରିବା କଥା ଯେ ୧୯୧୬ ଖ୍ରୀଷ୍ଟାବ୍ଦରେ ବରୋଦାଠାରେ ପ୍ରଥମକରି ଭାରତୀୟ ସଙ୍ଗୀତ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ଭାରତବିଖ୍ୟାତ ସଙ୍ଗୀତଜ୍ଞ ପଣ୍ଡିତ ବିଷ୍ଣୁ ନାରାୟଣ ଭାତ୍‌ଖଣ୍ଡେ ଗୀତଗୋବିନ୍ଦ ସମ୍ପର୍କରେ ଏକ ଗୁରୁତ୍ୱପୂର୍ଣ୍ଣ ମତ ପ୍ରକାଶ କରିଥିଲେ । ସେ କହିଥିଲେ ଯେ ''ଆମର ପ୍ରାଚୀନ ସଙ୍ଗୀତଗ୍ରନ୍ଥ ମଧ୍ୟରେ ବାରଶ ଶତାବ୍ଦୀର କବି ଜୟଦେବଙ୍କ ରଚନା 'ଗୀତଗୋବିନ୍ଦ' ହେଉଛି ଏକ ଶ୍ରେଷ୍ଠକୃତି । ଏହିପରି କେତେଗୋଟି ସଙ୍ଗୀତଗ୍ରନ୍ଥ ଆମ ସାହିତ୍ୟରେ ରହିଥିବା ଯୋଗୁଁ ଆମେ ପୃଥିବୀର ପ୍ରାଚୀନତମ ସଙ୍ଗୀତଜ୍ଞ ଜାତିବୋଲି ଦାବି କରୁଛୁ । ମାତ୍ର ଭାରତର ଅଧିକାଂଶ ସଙ୍ଗୀତଜ୍ଞ ବା ଗାୟକ ' ଗୀତଗୋବିନ୍ଦ'ର ସଙ୍ଗୀତଗୁଡ଼ିକୁ ତାହାର ମୌଳିକ ରାଗରେ ଗାନ କରିପାରୁନଥିବା ବିଷୟ ସେ ସୂଚାଇଥିଲେ ।

'ଗୀତଗୋବିନ୍ଦ'ରେ ସଙ୍ଗୀତର ପରିପ୍ରକାଶ କେଉଁ ଦେଶରୁ ପ୍ରଥମେ ପ୍ରକଟିତ ହୋଇଥିଲା, ଏହାର ଅନୁସନ୍ଧାନ କରିବାକୁ ଯାଇ ସାର୍ ଉଇଲିୟମ୍ ଜୋନ୍‌ସ (Sir William jones) କଲିକତାଠାରେ 'Asiatic Research Society Journal' ନାମକ ଗବେଷଣା ପତ୍ରିକାର ଖ୍ରୀ୧୨୯ ସଂଖ୍ୟାରେ (Vol.III.pp.190.207) ଗୋଟିଏ ଦୀର୍ଘ ପ୍ରବନ୍ଧରେ ପ୍ରକାଶ କରିଛନ୍ତି–

The Loves of Krishna and Radha XXX on the subject of the little pastoral at drama, entitled 'Geeta Govinda", it was the work of Jayadeva, who flourished, it is said before kalidash(?) and was born at kenduli, which may believe to be in kalinga, but there is a town of similar name, the nation of it insists that the first 'Lyrical poet of india was their countryman and celebrated in honour of him an annual festival (vide 'Preface to Geeta Govinda' by sir W. Jones Published by upendralal Das, calcutta-1894)

ସାର୍ ଉଇଲିୟମ୍ ଜୋନ୍‌ସ ଖ୍ରୀ ୧୮ଶ ଶତାବ୍ଦୀର ଶେଷ ଭାଗରେ କଲିକତାରେ ପ୍ରତିଷ୍ଠିତ ଉଚ୍ଚନ୍ୟାୟାଳୟର ମୁଖ୍ୟ ନ୍ୟାୟାଧୀଶ ଥିଲେ । ସେ ସର୍ବପ୍ରଥମେ ବୈଜ୍ଞାନିକ ପଦ୍ଧତିରେ ଇତିହାସ ଗବେଷଣା ନିମନ୍ତେ 'Asiatic Research society journal' ଇଂରାଜୀ ପତ୍ରିକାର ଶୁଭଦେଇ ନିଜେ କେତେକ ଗବେଷଣାମୂଳକ ପ୍ରବନ୍ଧ ପ୍ରକାଶ କରିଥିଲେ । ଭାରତୀୟ ସଙ୍ଗୀତର ମୂଳଦୁଆ ଖୋଜିବା ପାଇଁ ସେ ନେପାଳ, ଉତ୍ତର ଓ ପଶ୍ଚିମ ଭାରତର ଗୁଜୁରାଟ, ମହାରାଷ୍ଟ୍ର ପ୍ରଭୃତି ଦେଶ ଭ୍ରମଣ କରିଥିଲେ । କିନ୍ତୁ ସେଠାରୁ ସେ ଖବର ସଂଗ୍ରହ କରିଥିଲେ ଯେ ଭାରତୀୟ ସଂଗୀତ ପ୍ରଥମେ କଳିଙ୍ଗରେ ହିଁ ପ୍ରକାଶ ହୋଇଥିଲା । ତେଣୁ ଜୟଦେବଙ୍କ ସଙ୍ଗୀତ ତାଙ୍କ ଜନ୍ମଭୂମି କେନ୍ଦୁଲୀ ନାମକ ଗ୍ରାମସ୍ଥିତ କଳିଙ୍ଗ ଦେଶରେ ଆତ୍ମପ୍ରକାଶ କରିଥିଲା ବୋଲି ସେ ତାଙ୍କ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି । ସାର୍ ଉଇଲିୟମ୍ ଜୋନ୍‌ସଙ୍କ ସମୟରେ ଓଡ଼ିଶା ଇଂରେଜୀ ଶାସନାଧୀନ ହୋଇନଥିଲା । ତେଣୁ ସେ ଓଡ଼ିଶାର ନାମ ଉଲ୍ଲେଖ ନକରି କଳିଙ୍ଗ ବୋଲି ପ୍ରକାଶ କରିଛନ୍ତି ।

ପ୍ରେମ ପ୍ରଣୟର ସବୁଜ ସରଳାର୍ଥ 'ଗୀତଗୋବିନ୍ଦ' କୋମଳକାନ୍ତ ପଦାବଳୀ ଏବଂ ସରଳତରଳ ଭାବ ପ୍ରତ୍ୟେକ ଉତ୍କଳୀୟ ଜନମନରେ ଭକ୍ତିରସର ମନ୍ଦାକିନୀ ସୃଷ୍ଟି କରିଛି । ଭାରତୀୟ ବୈଷ୍ଣବ ଧର୍ମ ଚେତନାର ଅଦ୍ଭୁତ ପରିପ୍ରକାଶ ଓ ସାମାଜିକ, ସାଂସ୍କୃତିକ, ଐକ୍ୟକୁ ସୁଦୃଢ଼ କରିବାରେ 'ଜୟଦେବଙ୍କ ଗୀତଗୋବିନ୍ଦ ଏକ ସାର୍ଥକ ସୃଷ୍ଟି । ଓଡ଼ିଶାରେ ନୁହେଁ, ବିଶ୍ୱର କଳା, ସାହିତ୍ୟ, ସଙ୍ଗୀତ, ଧର୍ମକ୍ଷେତ୍ରରେ 'ଗୀତଗୋବିନ୍ଦର ପ୍ରଭାବ ସୁସ୍ପଷ୍ଟ । ଯେତେଦିନ ପର୍ଯ୍ୟନ୍ତ ସଙ୍ଗୀତ ବିଦ୍ୟାର ଆଦର ଥିବ, କାବ୍ୟବିଳାସ କୁଶଳ ରସିକମାନେ ତତ୍ତ୍ୱ ବିବେକ ଓ ଶୃଙ୍ଗାର ସମ୍ବନ୍ଧରେ ଗବେଷଣା କରୁଥିବେ, କୃଷ୍ଣଗତ ପ୍ରାଣ ବୈଷ୍ଣବମାନେ ଧରାପୃଷ୍ଠରେ ରହିଥିବେ, ସେତେଦିନ ପର୍ଯ୍ୟନ୍ତ ଜୟଦେବଙ୍କ ଅମରକୃତି 'ଶ୍ରୀଗୀତଗୋବିନ୍ଦ' ଜନଗଣର ମାନସପଟ୍ଟରେ ରହିଥିବ । 'ସଂସ୍କୃତ ସାହିତ୍ୟର ଇତିହାସ'ରେ (A.A. Macdwell) ଯଥାର୍ଥରେ ପ୍ରକାଶ କରିଛନ୍ତି–

It is some what strange that a poem which describes the transports of sensual Love with all the exuberance of an omentant fancy should, in the present instance and not for the first time have received an allegorical explanation in a mystical religious sense.

ସାରସ୍ୱତ ସାଗ୍ନିକ ସାଧକ ଜୟଦେବ ବାସ୍ତବରେ ଗଣର ଗୌଣିକ । 'ଗୀତଗୋବିନ୍ଦ' ଭାବର ଭାସ୍କର୍ଯ୍ୟ । କମନୀୟକଳାର କୋଣାର୍କ ଗୀତଗୋବିନ୍ଦ କବି ଜୟଦେବଙ୍କୁ ଚିର ଅମର କରି ରଖିବ ଏଥିରେ ତିଳେହେଲେ ସନ୍ଦେହର ଅବକାଶ ନାହିଁ ।

ପ୍ରମୁଖ ସଚିବ
ସିସୋର ସାହିତ୍ୟ ଏକାଡେମୀ
୪୪୩, ଶହୀଦ ନଗର, ଭୁବନେଶ୍ୱର

ସହାୟକ ଗ୍ରନ୍ଥସୂଚୀ

୧– ଶ୍ରୀଜୟଦେବ ଓ ଶ୍ରୀଗୀତଗୋବିନ୍ଦ: ଶ୍ରୀ କେଦାରନାଥ ମହାପାତ୍ର
ପ୍ରକାଶକାଳ: ୧୯୭୩ ପ୍ରକାଶକ: ଗ୍ରନ୍ଥକର୍ତ୍ତା

୨– ଉତ୍କଳରକବି ଜୟଦେବ: ସାରଳା ସାହିତ୍ୟ ସଂସଦ ପ୍ରକାଶକାଳ: ୧୯୯୨, ପ୍ରକାଶକ: ଓଡ଼ିଶାବୁକ୍‌ଷ୍ଟୋର: କଟକ

୩– ଓଡ଼ିଆ ରାଧା ସାହିତ୍ୟ: ଡକ୍ଟର ଆଶୁତୋଷ ପଟ୍ଟନାୟକ
ପ୍ରକାଶକାଳ: ୧୯୮୮

୪– ପ୍ରାଚୀନଉତ୍କଳ: ଶ୍ରୀ ଜଗବନ୍ଧୁ ସିଂହ: ପ୍ରକାଶକାଳ: ୧୯୭୪ ପ୍ରକାଶକ: ଓଡ଼ିଶା ସାହିତ୍ୟ ଏକାଡେମୀ: ଭୁବନେଶ୍ୱର

୫– ଓଡ଼ିଆ ସାହିତ୍ୟର ଇତିହାସ: ଡକ୍ଟର ସୂର୍ଯ୍ୟନାରାୟଣ ଦାସ: ପ୍ରକାଶ କାଳ: ୧୯୬୬, ପ୍ରକାଶକ: ଗ୍ରନ୍ଥମନ୍ଦିର: ବିନୋଦବିହାରୀ: କଟକ:୨

୬– ଓଡ଼ିଆ କବି ଓ କାବ୍ୟ: ଶ୍ରୀ ନୀଳମଣି ମିଶ୍ର: ପ୍ରକାଶ କାଳ: ୧୯୬୯ ପ୍ରକାଶକ: ଓଡ଼ିଶା ସାହିତ୍ୟ ଏକାଡେମୀ: ଭୁବନେଶ୍ୱର

୭– ପଞ୍ଚସଖା ଓଡ଼ିଆ ସାହିତ୍ୟ: ଡକ୍ଟର ବେବେନ୍ଦ୍ର ମହାନ୍ତି: ପ୍ରକାଶ କାଳ: ୧୯୭୩, ପ୍ରକାଶକ: ଫ୍ରେଣ୍ଡସ୍ ପବ୍ଲିଶର୍ସ: ବିନୋଦବିହାରୀ: କଟକ

୮– ସୃଷ୍ଟି ଓ କୃଷ୍ଟି: ଅଧ୍ୟାପକ ବ୍ରହ୍ମାନନ୍ଦ ଦାସ: ପ୍ରକାଶକାଳ: ୧୯୭୨ ପ୍ରକାଶକ: ଡକ୍ଟର ପ୍ରଭାବତୀ ଦାସ

୯– ମହାକବି ଜୟଦେବ ଓ ଗୀତଗୋବିନ୍ଦ: ଡକ୍ଟର ସତ୍ୟନାରାୟଣ ରାଜଗୁରୁ: ପ୍ରକାଶକାଳ: ୧୯୯୫, ପ୍ରକାଶକ: ଆଶା ପୁସ୍ତକାଳୟ: ବ୍ରହ୍ମପୁର

୧୦– ଆମ କାବ୍ୟ–କବିତାରେ ଶ୍ରୀରାଧାବିଳାସ: ଶ୍ରୀମତୀ ମମତା ଦାଶ: ପ୍ରକାଶକାଳ: ୨୦୧୦, ପ୍ରକାଶକ: ମନୋରମା ପବ୍ଲିଶର୍ସ: ବାଲୁବଜାର: କଟକ

English section

1. A History of sanskrit literature: A. Macdewell Reprint- 1928.
2. A History of sanskrit literature: A.B. Keith Reprint: 1920
3. Antiquities of odisha: R.L. Mitra Vol. page- 165
4. History of Indian literature: M. Winternitz
5. A Brief survey of ancient literature: R.C. Ghosh classical publishing company, Newdelhi-15
6. Ancient Indian literary and cultural tradition: Ashim kumar chatterjee
7. History of sanskrit poeties: P.V. Kane: Motilal Banarasidasa: 1963.
8. A New History of sanskrit literature: Krishna chaitanya: Newdelhi:1977.

# ଓଡ଼ିଶୀ କୀର୍ତ୍ତନରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ

ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ

ଉତ୍କଳୀୟ ସଂସ୍କୃତିରେ ସଂକୀର୍ତ୍ତନର ଧାରା କେବେଠାରୁ ଆରମ୍ଭ ହୋଇଛି, ତାହାର କୌଣସି ସ୍ପଷ୍ଟ ତଥ୍ୟ ଇତିହାସରେ ମିଳୁନଥିଲେ ମଧ୍ୟ ଶ୍ରୀଜଗନ୍ନାଥଙ୍କର ଜରାଜୀର୍ଣ୍ଣ ମନ୍ଦିରର ପୁନଃ ନିର୍ମାଣ ସହ ଗୁମୁଟି ମନ୍ଦିର ନିର୍ମାଣ ଓ ତାହାର ପ୍ରତିଷ୍ଠା ସମୟରେ ଏହାର ଅସ୍ତିତ୍ୱ ଥିବାର ସ୍ପଷ୍ଟତା କେବେହେଲେ ଅସ୍ୱୀକାର କରିହେବ ନାହିଁ । ଏହି ମନ୍ଦିର ନିର୍ମାଣ ଓ ପ୍ରତିଷ୍ଠାର ମୁଖ୍ୟ ଥିଲେ ତତ୍କାଳୀନ କଳିଙ୍ଗର ଗଙ୍ଗ ସମ୍ରାଟ ଚୋଡଗଙ୍ଗଦେବ (ଖ୍ରୀ.ଅ. ୧୦୭୮-୧୧୪୭) । ସେତେବେଳେ ତାଙ୍କ ଦ୍ୱାରା ପ୍ରଚଳିତ ରାହାସ ନୃତ୍ୟରେ ମୃଦଙ୍ଗ, ଗିନି ଓ ଝାଞ୍ଜର ପ୍ରଚଳନ ଥିଲା । ରାହାସ କହିଲେ ରାସନୃତ୍ୟକୁ ବୁଝାଯାଏ । ସମ୍ରାଟ ଚୋଡଗଙ୍ଗଦେବ ଏହି କୀର୍ତ୍ତନ ନିମନ୍ତେ ଗୋଦାବରୀ ନଦୀ କୂଳରୁ ମୃତ୍ତିକା ଅଣାଇ ସେଥିରେ ମୃଦଙ୍ଗ ନିର୍ମାଣ କରାଉଥିଲେ । ମୃଦଙ୍ଗ, ଝାଞ୍ଜ ଓ ଗିନିର ତାଳେ ତାଳେ କୀର୍ତ୍ତନ ଓ ନୃତ୍ୟ ଆରମ୍ଭ ହେଉଥିଲା ଓ ସେହି ସମୟରୁ ମାହାରୀ ନୃତ୍ୟ ମଧ୍ୟ ଶ୍ରୀମନ୍ଦିର ସେବାରେ ପ୍ରବେଶ କରିଥିବା ଷୋଡଶ ଶତାବ୍ଦୀର କବି ମାଧବ ପଟ୍ଟନାୟକଙ୍କ 'ବୈଷ୍ଣବ ଲୀଳାମୃତ' ଗ୍ରନ୍ଥରୁ ଜଣାଯାଏ । ଗୋଦାବରୀ ନଦୀ କୂଳରୁ ମୃଦଙ୍ଗ ନିର୍ମାଣ ନିମନ୍ତେ ମାଟି ଆଣୁଥିବା ଯୋଗୁଁ ଓଡ଼ିଶାରେ ନାମ ସଂକୀର୍ତ୍ତନ ମୂଳରେ ଦକ୍ଷିଣର ପ୍ରଭାବ ଥିବାର ସମ୍ଭାବନାକୁ ଏଡାଇ ଦିଆଯାଇ ନପାରେ । ଶ୍ରୀଜଗନ୍ନାଥଙ୍କ ମୁଖ୍ୟ ମନ୍ଦିର ଜୀର୍ଣ୍ଣ ଥିବାରୁ ସମ୍ରାଟ ଚୋଡଗଙ୍ଗଦେବ ଏହାର ସଂସ୍କାର କାର୍ଯ୍ୟ କରିବା ସହ ତତ୍‌ସଲଗ୍ନ ବିମାନ ଓ ଜଗମୋହନ ମନ୍ଦିର ଆଦି ନିର୍ମାଣ କରାଇଥିଲେ । ଏହି ଗର୍ଭଗୃହ ପ୍ରତିଷ୍ଠା ଦିନ ତାଙ୍କର ଜ୍ୟେଷ୍ଠପୁତ୍ର କାମାର୍ଣ୍ଣଦେବ (ଖ୍ରୀ.ଅ. ୧୧୪୭-୧୧୫୬) ଯୁବରାଜ ପଦରେ ମଧ୍ୟ ଅଭିଷିକ୍ତ ହୋଇଥିଲେ । ତେଣୁ ଏଥିରେ ମନ୍ଦିର ପ୍ରତିଷ୍ଠା ଓ କାମାର୍ଣ୍ଣଦେବଙ୍କ ଯୁବରାଜ ପଦରେ ଅଭିଷେକ ହେବା ସହ କୀର୍ତ୍ତନ ପ୍ରଚଳନର ଏକ ସ୍ପଷ୍ଟ ଚିତ୍ର ଦେଖିବାକୁ ମିଳିଥାଏ । କବି ମାଧବ ପଟ୍ଟନାୟକଙ୍କ ଆବିର୍ଭାବ ସମ୍ରାଟ ଚୋଡଗଙ୍ଗଦେବଙ୍କ ରାଜତ୍ୱର ପ୍ରାୟ ୩୦୦ବର୍ଷ ପରେ ହୋଇଛି । ସେ ଥିଲେ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳ ତଥା ଦକ୍ଷିଣ ଉତ୍କଳର ରାଜମହେନ୍ଦ୍ରୀଠାରେ ରାଜ୍ୟପାଳ ଥିବା ରାୟ ରାମାନନ୍ଦଙ୍କର ଜଣେ ବ୍ୟକ୍ତିଗତ ସହାୟକ । ଜଣାଯାଏ ଯେ, ଖ୍ରୀ.ଅ. ୧୪୯୯ଠାରୁ ସେ ରାୟରାମାନନ୍ଦଙ୍କର ବ୍ୟକ୍ତିଗତ ସହାୟକ ଭାବେ କାର୍ଯ୍ୟ କରିଆସୁଥିଲେ । କବି ମାଧବ ପଟ୍ଟନାୟକଙ୍କ ଘର ଥିଲା ଖଣ୍ଡପଡା ଗଡ । ତାଙ୍କୁ ଯେତେବେଳେ ମାତ୍ର ୨୧ ବର୍ଷ ବୟସ ହୋଇଥିଲା ସେତେବେଳେ ସେ ପୁରୀ ଶ୍ରୀକ୍ଷେତ୍ରରେ ପହଞ୍ଚି ଥିଲେ ଓ ପୁରୀ ନିକଟସ୍ଥ ବ୍ରହ୍ମଗିରିର ବେଣ୍ଟପୁର ଗ୍ରାମରେ ଥିବା ଭକ୍ତ ମାଧବେନ୍ଦ୍ର ପୁରୀ ଓ ତାଙ୍କ ସହିତ ତାଙ୍କର ଦୁଇ ଶିଷ୍ୟ ଈଶ୍ୱରପୁରୀ ଓ ରାଘବପୁରୀଙ୍କ କୀର୍ତ୍ତନ ଦେଖିବା ନିମନ୍ତେ ଯାଇଥିଲେ । ସେମାନଙ୍କ କୀର୍ତ୍ତନ ଦେଖି ଏଭଳି ଭାବ ବିହ୍ୱଳ ହୋଇପଡିଲେ ଯେ ତାଙ୍କୁ ସେମାନଙ୍କ ଦଳରେ ରଖିବା ନିମନ୍ତେ ଅନୁରୋଧ କରିଥିଲେ । ମାତ୍ର ସେଠାରେ ଉପସ୍ଥିତ ଥିବା ରାୟରାମାନନ୍ଦ ଯୁବକଟିର ପରିଚୟ ପାଇ ତାଙ୍କୁ ନିଜ ପାଖରେ ରଖି ଶିକ୍ଷିତ କରାଇଥିଲେ । ରାୟରାମାନନ୍ଦଙ୍କ ବାପା ଭବାନନ୍ଦ ପଟ୍ଟନାୟକ ମେଦିନୀପୁରର ମନ୍ଦାରଗଡ ଠାରେ ରାଜ୍ୟପାଳ ରୂପେ ଗଜପତି ପୁରୁଷୋତ୍ତମଙ୍କ ଦ୍ୱାରା ନିଯୁକ୍ତି ପାଇଥିଲେ । ତେଣୁ କବିଙ୍କର ଜନ୍ମ ହିସାବରୁ ଜଣାଯାଏ ଯେ ସେ ସମସ୍ତ ସମୟ ପୁରୀରେ ହିଁ କଟାଇଛନ୍ତି । ତେଣୁ ଚୋଡଗଙ୍ଗଦେବଙ୍କ ପରଠାରୁ ୩୦୦ ବର୍ଷର ଲୋକକଥାକୁ ସେ ନିଶ୍ଚିତ ଭାବରେ ଶୁଣି ବା ସଂଗ୍ରହ କରି ନିଜର ପୁସ୍ତକରେ ଲିପିବଦ୍ଧ କରିଛନ୍ତି । ''ବୈଷ୍ଣବ ଲୀଳାମୃତ''ରେ ଥିବା ଏ ସମ୍ପର୍କୀୟ କେତୋଟି ପଦର ଅବତାରଣା ଏଠାରେ ଉଲ୍ଲେଖ କରାଯାଇଛି ।

ରାଧାକୃଷ୍ଣ ଏ ମେଳ ବପୁ ।। ଜଗନ୍ନାଥ ଯେ ସର୍ଜିବାକୁ
ସ୍ୱାମୀ ଯେ ମେଳା ଭିଆଇଲା ।। ରାହାସ ନାମଟି ସେ ଦେଲା
ଏଥେ ଜପ ଯେ ତପ ଯୋଗ ।। ଭଗତି ଭାବ ଅନୁରାଗ
ସବୁକୁ ଆଣି ମେଳାଇଲା ।। ରାହାସ ବୋଲିଣ ବୋଇଲା
ରାହାସ ନାମ ସଂକୀର୍ତ୍ତନ ।। ନାମ ହୁଁ ନୋହେ ଏଟି ଭିନ୍ନ
ଏଥେ ଝାଞ୍ଜ ମୃଦଙ୍ଗ ଗିନି ।। କରତାଳି ଯେ ଲୋଡ଼ା ପୁଣି
କୃଷ୍ଣ ରସ ଯେ ଗୀତ ହୋଇ ।। ଗୀତଗୋବିନ୍ଦ କର୍ଣ୍ଣାମୃତ ଚିତ୍ତୋଇ
ଦକ୍ଷିଣୀ ପଦ ମେଳ ଧରି ।। ନାଚନ୍ତି ପଙ୍‌କ୍ତି ପ୍ରାୟେ କରି
ଝାଞ୍ଜ ମୃଦଙ୍ଗ କଳରୋଳେ ।। ନାଚନ୍ତି ଢଳିଣ ଶୟଳେ
ଆକାଶ ଅବନୀ ଏକାକାର ।। ପୃଥିବୀ ଦ୍ରବେ ଜଳଧାର

('ବୈଷ୍ଣବ ଲୀଳାମୃତ' ଦ୍ୱିତୀୟ ଅଧ୍ୟାୟ– ପଦ ୫–୧୪)

ଏହି କୀର୍ତ୍ତନରେ ଶ୍ରୀଜୟଦେବଙ୍କ ଶ୍ରୀଗୀତଗୋବିନ୍ଦ ଓ ବିଲ୍ୱମଙ୍ଗଳଙ୍କ ଶ୍ରୀକୃଷ୍ଣକର୍ଣ୍ଣାମୃତର ପଦମାନ ଗାନ କରାଯାଉଥିଲା । ତେଣୁ ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆବିର୍ଭାବ ପୂର୍ବରୁ ଓଡ଼ିଶାରେ ସଂକୀର୍ତ୍ତନ ଧାରାର ପ୍ରଚଳନ ଥିଲା ।

ଶ୍ରୀଚୈତନ୍ୟ ପୁରୀରେ ଆସି ପହଞ୍ଚିବା ପରେ ପଞ୍ଚସଖାଙ୍କ ସହିତ ତାଙ୍କର ସାକ୍ଷାତ ହୋଇଛି । ଶ୍ରୀମନ୍ଦିର ବେଢାରେ ଜଗନ୍ନାଥ ଦାସ ବଟ ଗଣେଶଙ୍କ ନିକଟରେ ରାଧାକୃଷ୍ଣଙ୍କ ମୂର୍ତ୍ତି ସ୍ଥାପନା କରିବା ସହ ସେଠାରେ ସଂସ୍କୃତ ଭାଗବତର ଓଡ଼ିଆ ରୂପାନ୍ତର ଲୋକମାନଙ୍କୁ ତାହାର ତତ୍ତ୍ୱମାନ ବୁଝାଉଥିଲେ । ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କ ପାଖରେ ପ୍ରଥମେ ପହଞ୍ଚି ଭାଗବତର ଏହି ତତ୍ତ୍ୱକୁ ବୁଝିଥିଲେ । ସେତେବେଳେ ତାଙ୍କ ସହ ନଦିଆରୁ ଆସିଥିବା ସହଚରମାନେ ପୁରୀରେ ଆସି ପହଞ୍ଚି ନଥିଲେ । ଜଗନ୍ନାଥ ଦାସଙ୍କ ଠାରୁ ଏପରି ତତ୍ତ୍ୱମାନ ଶୁଣି ଶ୍ରୀଚୈତନ୍ୟ ତାଙ୍କୁ 'ସ୍ୱାମୀ' ବୋଲି ସମ୍ବୋଧନ କରିଥିଲେ । ଏହାପରେ ଶ୍ରୀଜଗନ୍ନାଥ ଦାସଙ୍କର ଅନ୍ୟ ସଖାମାନେ ଯେଉଁମାନେ କି ସେତେବେଳେ ପଞ୍ଚସଖା ନାମରେ ଓଡ଼ିଶାରେ ବିଦିତ ଥିଲେ, ସେମାନଙ୍କର ରାୟରାମାନନ୍ଦଙ୍କ ସହ ଘନିଷ୍ଠତା ରହିଥିଲା । ତେଣୁ ଶ୍ରୀଚୈତନ୍ୟ ବି କ୍ରମଶଃ ସେମାନଙ୍କ ସହ ପରିଚିତ ହୋଇଗଲେ । ରାଧା ହିଁ ଶ୍ରୀକୃଷ୍ଣଙ୍କର ଆହ୍ଲାଦିନ ଶକ୍ତି ଓ ଏହି ଶକ୍ତି ହିଁ ଆନନ୍ଦମୟୀ ଏବଂ ରାଧାକୃଷ୍ଣଙ୍କର ତତ୍ତ୍ୱକୁ ଶ୍ରେଷ୍ଠ ତତ୍ତ୍ୱ ଭାବରେ ପଞ୍ଚସଖାମାନେ ଗ୍ରହଣ କରିନେଇଥିଲେ । ଶ୍ରୀଚୈତନ୍ୟ ରାୟରାମାନନ୍ଦଙ୍କ ଠାରୁ ଶ୍ରୀଜୟଦେବଙ୍କ ଶ୍ରୀଗୀତଗୋବିନ୍ଦର ରାଧା ଭାବ ତତ୍ତ୍ୱ କଥା ଶୁଣିଥିଲେ ଓ ସେଥିପାଇଁ ତାଙ୍କୁ ନିଜର 'ଗୁରୁ' ଭାବରେ ସ୍ୱୀକାର କରିଥିବା ଉକ୍ତ 'ବୈଷ୍ଣବ ଲୀଳାମୃତ' ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ଏଥିରୁ ନିଶ୍ଚିତ ଯେ ଶ୍ରୀଚୈତନ୍ୟ ପୁରୀ ଆସି ପଞ୍ଚସଖାଙ୍କ ସହ ମିଶିବା ପୂର୍ବରୁ ଶ୍ରୀଜୟଦେବ ଓ ଗୀତଗୋବିନ୍ଦରେ ବର୍ଣ୍ଣିତ ରାଧାଭାବ ତତ୍ତ୍ୱ ସମ୍ପର୍କରେ ଆଦୌ କିଛି ଜାଣିନଥିଲେ ।

ଏହି ପଞ୍ଚସଖା ଓ ଶ୍ରୀଚୈତନ୍ୟ ସେତେବେଳେ ଉତ୍କଳର ବିଭିନ୍ନ ସ୍ଥାନକୁ କୀର୍ତ୍ତନ କରିବା ନିମନ୍ତେ ଯାଉଥିଲେ । ଶ୍ରୀଚୈତନ୍ୟଙ୍କ ଶେଷ ୧୨ ବର୍ଷ ପଞ୍ଚସଖାଙ୍କ ସହିତ ଏହି କୀର୍ତ୍ତନ କରିବାରେ ସମ୍ପୂର୍ଣ୍ଣ ଭାବେ ଅତିବାହିତ ହୋଇଥିଲା । ସେଗୁଡ଼ିକ ମଧ୍ୟରୁ ପ୍ରତିବର୍ଷ ପୌଷ ପୂର୍ଣ୍ଣମୀ ତିଥିରେ ଏହି ବୈଷ୍ଣବଗୋଷ୍ଠୀ ପୁରୀରୁ ଏକାମ୍ରକ୍ଷେତ୍ର ଭୁବନେଶ୍ୱରକୁ ଆସୁଥିଲେ ଓ ସେଠାରେ କୃତିବାସ ଲିଙ୍ଗରାଜଙ୍କୁ ପୂଜାକରି କୀର୍ତ୍ତନ ଆରମ୍ଭ କରୁଥିଲେ । ତାହା ପରେ ଅନନ୍ତ ବାସୁଦେବ, କେଦାର ଗୌରୀରେ କୀର୍ତ୍ତନ ସାରି ନିଆଳୀ ଶାସନ ନିକଟସ୍ଥ ମାଧବ ମନ୍ଦିରରେ କୀର୍ତ୍ତନ କରୁଥିଲେ । ତାହା ପରେ ଶ୍ରୀଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀ ଗ୍ରାମରେ ଶ୍ରୀଗୀତଗୋବିନ୍ଦର ପଦମାନ ଗାନ ସହ କୀର୍ତ୍ତନ କରି ଭାବବିହ୍ୱଳିତ ହୋଇପଡୁଥିଲେ । ଏଥିରୁ ପ୍ରମାଣିତ ଯେ ଷୋଡଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ କେନ୍ଦୁଲୀ ଗ୍ରାମ ଓ ସେଠାରେ ଥିବା ଶ୍ରୀଜୟଦେବଙ୍କ ସ୍ମୃତି ଅମ୍ଳାନ ଥିଲା । ଏହାପରେ ସେମାନେ କାକଟପୁରରେ ମଙ୍ଗଳାଙ୍କ ଦର୍ଶନସାରି କୋଣାର୍କରେ ପହଞ୍ଚି ସେଠାରେ କୀର୍ତ୍ତନ କରୁଥିଲେ । ସେମାନେ କୋଣାର୍କରେ ପ୍ରତିଦିନ ଭୋଗ ହେଉଥିବା ଖିରୀ ଓ ଲଡୁ ଖାଉଥିବାର ବୈଷ୍ଣବ ଲୀଳାମୃତରେ ଉଲ୍ଲେଖ ରହିଛି । ତେଣୁ ଏଥିରୁ ଜଣାଯାଏ ଯେ ଉକ୍ତ ସମୟରେ କୋଣାର୍କ ମନ୍ଦିରର ପୂଜା ପଦ୍ଧତି ଅକ୍ଷୁର୍ଣ୍ଣ ଥିଲା ।

ଏହିପରି ସେମାନେ କଟକ ବାରବାଟୀରେ ଥିବା ଗଜପତି ସମ୍ରାଟ ପ୍ରତାପରୁଦ୍ରଦେବଙ୍କ ଶ୍ରୀନଅରରେ ମଧ୍ୟ କୀର୍ତ୍ତନ କରୁଥିଲେ । ଚୈତ୍ର ମାସରେ ବିରଜା କ୍ଷେତ୍ର ଯାଜପୁରକୁ କୀର୍ତ୍ତନ ପାଇଁ ଯାଉଥିଲେ ଫେରିବା ବେଳେ ବାଟରେ ସେମାନେ କେନ୍ଦ୍ରାପଡାର ବଳଦେବଙ୍କ ମନ୍ଦିର ଓ ଝଙ୍କଡରେ ଥିବା ଶାରଳାଙ୍କ ମନ୍ଦିରରେ କୀର୍ତ୍ତନ କରୁଥିଲେ ।

ଶ୍ରୀଚୈତନ୍ୟ ଓ ପଞ୍ଚସଖା ଯେଉଁଠାକୁ କୀର୍ତ୍ତନ କରିବାକୁ ଯାଉଥିଲେ ସେଠାରେ ପ୍ରଥମେ ଜଗନ୍ନାଥ ଦାସଙ୍କ ଭାଗବତ ପୋଥିମାନ ଗୋଟିଏ ଆସନ ଉପରେ ସ୍ଥାପନ କରି ଦେବତା ଭଳି ପୂଜା କରୁଥଲେ । ଆଉ ସେହିଦିନ ସେଠାର ଗ୍ରାମର ପ୍ରତି ଘରେ ଭାଗବତ ପାଠ କରାଯାଉଥିଲା । କୀର୍ତ୍ତନ ବେଳେ ଶ୍ରୀଜୟଦେବଙ୍କ ରଚିତ ଶ୍ରୀଗୀତଗୋବିନ୍ଦର ଅନୁବାଦ ସହ କୃଷ୍ଣକର୍ଣ୍ଣାମୃତର ପଦମାନ ଗାନ କରି ସେମାନେ ନୃତ୍ୟ କରୁଥିଲେ । ଲୋକେ ହିଂସ୍ରଜନ୍ତୁ ଭୟ, ପ୍ରାକୃତିକ ବିପର୍ଯ୍ୟୟ ଓ ଅପୁତ୍ରିକର ପୁତ୍ର ଲାଭ ନିମନ୍ତେ ଗ୍ରାମେ ଗ୍ରାମେ କୀର୍ତ୍ତନର ଆୟୋଜନ କରୁଥିଲେ ଓ ପଞ୍ଚସଖାଙ୍କ ସହ ଶ୍ରୀଚୈତନ୍ୟଙ୍କୁ କୀର୍ତ୍ତନ କରିବା ନିମନ୍ତେ ନିମନ୍ତ୍ରଣ କରୁଥିଲେ ।

କୀର୍ତ୍ତନରେ ମୁଖ୍ୟତଃ ଭାଗବତ ପୋଥି ସହ ତୁଳସୀ ଗଛ ରଖାଯାଉଥିଲା ଓ ଶ୍ରୀଜୟଦେବଙ୍କ ଜୟଗାନ କରିବା ସହିତ କୀର୍ତ୍ତନର ଆରମ୍ଭ ଶ୍ରୀଗୀତଗୋବିନ୍ଦରୁ ହିଁ କରାଯାଉଥିଲା । ଏହା ସହିତ ଜଗନ୍ନାଥ ଦାସ ମଧ୍ୟ କୃଷ୍ଣ ସଙ୍ଗୀତ ରଚନା କରୁଥିଲେ ଓ ତାକୁ ସମସ୍ତେ ମିଶି ଗାଇ କୀର୍ତ୍ତନ କରୁଥିଲେ । ଏହି କୀର୍ତ୍ତନ ଗୋଷ୍ଠୀଙ୍କ ସହିତ ଶ୍ରୀଚୈତନ୍ୟଙ୍କ ସହ ନଦିଆରୁ ଆସିଥିବା କୌଣସି ସହଚର ସହଯୋଗ କରୁନଥିଲେ । ଜଗନ୍ନାଥ ଦାସଙ୍କ କୃଷ୍ଣ ସଙ୍ଗୀତର ଏକ ଅନୁବାଦ ନିମ୍ନରେ ଦିଆଗଲା ।

ତୋର ଚରଣେ ମନ ଲାଗଇରେ ।
ଗିରିଧର ! ତୋର ଚରଣେ ମନ ଲାଗଇରେ ॥
ନଟବର ନାଗର ଗୋପୀଙ୍କ ବାସ ଚୋର
ତୋର ଚରଣେ ମନ ଲାଗଇରେ ॥
ପୟର ତୋର ଛନ୍ଦା ଭଗତ ଭାବେ ବନ୍ଧା
ତୋର ଚରଣେ ମନ ଲାଗଇରେ ॥
ଗୋପୀଙ୍କ ମନ ହର ରାଧାର ଚିତ୍ତ ଚୋର
ତୋର ଚରଣେ ମନ ଲାଗଇରେ ॥
ଜଗା ଦାସ ବୋଲଇ ଦାସ ଭାବରେ ରହି
ପ୍ରେମଧନକୁ ମନ ଆସଇରେ ॥
ତୋର ଚରଣେ ମନ ଲାଗଇରେ ॥

କୀର୍ତ୍ତନରେ ବ୍ୟବହୃତ ମୃଦଙ୍ଗକୁ କେଉଁଭଳି ଭାବରେ 'ଖୋଳ' କୁହାଗଲା, ତାହାର ଏକ ସୁନ୍ଦର ଗପ ବୈଷ୍ଣବ ଲୀଳାମୃତରେ ଦେଖିବାକୁ ମିଳେ ।

ଶ୍ରୀଚୈତନ୍ୟ ନିଜ ସାଥୀମାନଙ୍କ ସହିତ ପୁରୀର ସାହି ଦାଣ୍ଡରେ କୀର୍ତ୍ତନ କରି ଗଲାବେଳେ ଘର ଭିତରୁ ପିଲାମାନେ ବାହାରି ଆସି ଏହି କୀର୍ତ୍ତନକୁ ଦେଖୁଥିଲେ । ଥରେ ଦାଣ୍ଡରେ ଗଲାବେଳେ ଜ୍ୱର ରୋଗ ଭୋଗୁଥିବା ପିଲାଟିଏ ତା'ର ମାଆ କଥା ନମାନି ଦାଣ୍ଡରେ କୀର୍ତ୍ତନ ଦେଖିବା ପାଇଁ ଦୌଡି ଆସିଲାବେଳେ ଝୁଣ୍ଟି ପଡି ପିଣ୍ଡା ତଳକୁ ଗଡିପଡିଲା ଓ ତା'ର ମସ୍ତକରୁ ରକ୍ତ ଝରିଲା । ତା'ର ମା' ଏଥିରେ କ୍ରୋଧିତା ହୋଇ ପିଲାର ଗୁହମୁତ କନା ସବୁକୁ କୀର୍ତ୍ତନିଆଁଙ୍କ ଉପରକୁ ଫୋପାଡି ଦେଲା । ଶ୍ରୀଚୈତନ୍ୟ ତା' ମା'ର ଏପରି ବ୍ୟବହାରରେ ଦୁଃଖିତ ହେଲେ ସତ ମାତ୍ର ଏହାକୁ ଏକ ପୁରସ୍କାର ବୋଲି ମନେକରି ସେହି ଶିଶୁର ମଳକୁ ଚନ୍ଦନ ବୋଲି ଗ୍ରହଣ କଲେ । ଆଉ ମଳ ଥିବା କନାକୁ ମୃଦଙ୍ଗ ଉପରେ ବିଛେଇ ଦେଲେ । ତେଣୁ ମୃଦଙ୍ଗକୁ ଏପରି ଆକ୍ରମଣରୁ ରକ୍ଷା କରିବା ନିମନ୍ତେ ତାହା ଉପରେ ଏକ କନା ଆବରଣର ଖୋଳ ରଖାଗଲା ଓ ସେହିଦିନଠାରୁ ଏହାର ଅନ୍ୟନାମ ହେଲା ଖୋଳ । ତେଣୁ ଶ୍ରୀଚୈତନ୍ୟ ଓ ପଞ୍ଚସଖା ଓଡ଼ିଶାରେ ଓଡ଼ିଶୀ କୀର୍ତ୍ତନ ପ୍ରସାରଣର ମୁଖ୍ୟ ଥିବାର କହିଲେ ଅତ୍ୟୁକ୍ତି ହେବନାହିଁ । ଇତିହାସରେ ଚୋଡଗଙ୍ଗଦେବଙ୍କ ରାଜତ୍ୱ ସମୟରୁ ଆରମ୍ଭ ହୋଇଥିବା ଏହି ସଂକୀର୍ତ୍ତନ ବା ରାହାସନୃତ୍ୟ ଓଡିଶାରେ ଓଡ଼ିଶୀ ସଂକୀର୍ତ୍ତନ ନାମରେ ପ୍ରଚାରିତ ହେଲା । ଶ୍ରୀଚୈତନ୍ୟଙ୍କ ସହିତ ଆସିଥିବା ବଙ୍ଗୀୟ ସାଥୀମାନେ ଓଡ଼ିଆ ସନ୍ଥମାନଙ୍କ ସହ କଳି କରି ତାଙ୍କୁ ଛାଡି ବୃନ୍ଦାବନ ଚାଲିଗଲେ । ତାଙ୍କ ସହ କୀର୍ତ୍ତନ କରିଆସୁଥିବା ସାଥୀମାନଙ୍କ କୀର୍ତ୍ତନକୁ ସେ ନଦିଆ କୀର୍ତ୍ତନ ନାମରେ କହୁଥିଲେ । ଖ୍ରୀ.ଅ. ୧୫୩୩, ଅପ୍ରେଲ ୨୭ ତାରିଖ ବୈଶାଖ ଶୁକ୍ଳ ତୃତୀୟା (ଅକ୍ଷୟ ତୃତୀୟା)ର ବ୍ରାହ୍ମ କାଳରେ ଶ୍ରୀଚୈତନ୍ୟଙ୍କର ଦେହାବସାନ ଶ୍ରୀମନ୍ଦିର ଉତ୍ତର ପାର୍ଶ୍ୱ ବେଢାରେ ହୋଇଥିଲା । ଗଜପତି ସମ୍ରାଟ ପ୍ରତାପରୁଦ୍ରଦେବଙ୍କ ଆଦେଶରେ ତାଙ୍କ ମର ଶରୀରକୁ କୋଇଲି ବୈକୁଣ୍ଠରେ ପୋତି ଦିଆଗଲା । ସେଠାରେ କେବଳ ରାୟରାମାନନ୍ଦ, ଜଗନ୍ନାଥ ଦାସ ଓ ଅନ୍ୟ ଦୁଇଜଣ ସେବକ ଉପସ୍ଥିତ ଥିଲେ। ପରେ ଦେଉଳ ଶୋଧ କରାଯାଇଥିଲା । ସେହି ମହାମାନବମାନଙ୍କର ସ୍ମୃତିକୁ ଉଜ୍ଜୀବିତ କରିବା ପାଇଁ ଶ୍ରୀଚୈତନ୍ୟଙ୍କ ଦେହାବସାନ ଅକ୍ଷୟତୃତୀୟା ଦିନ ଠାରୁ ତିନି ଦିନ ପର୍ଯ୍ୟନ୍ତ ଏକ ସଂକୀର୍ତ୍ତନ ଯାତ୍ରା ଭୁବନେଶ୍ୱରରୁ ପୁରୀ ପର୍ଯ୍ୟନ୍ତ ଶ୍ରୀଜୟଦେବଙ୍କ ଜୟନ୍ତୀ ଉତ୍ସବ ଅବସରରେ ଜୟଦେବ ଫାଉଣ୍ଡେସନ ଟ୍ରଷ୍ଟ ପକ୍ଷରୁ ବିଗତ ୨୦ବର୍ଷ ଧରି ଆୟୋଜନ ହୋଇ ଆସୁଅଛି । ପ୍ରତିବର୍ଷ ଶ୍ରୀଚୈତନ୍ୟ ଓ ପଞ୍ଚସଖା ଭୁବନେଶ୍ୱରସ୍ଥ ବିନ୍ଦୁସାଗର କୂଳସ୍ଥ ଅନନ୍ତ ବାସୁଦେବଙ୍କ ମନ୍ଦିରରୁ ଯେଉଁ ବାଟ ଦେଇ ପୁରୀ ପର୍ଯ୍ୟନ୍ତ ସଂକୀର୍ତ୍ତନ କରି ଯାଉଥିଲେ, ଆପାତତଃ ସେହି ପଥକୁ ଅନୁସରଣ କରି ଏହି ଆୟୋଜିତ ସଂକୀର୍ତ୍ତନ ଯାତ୍ରା ଯାଇଥାଏ।

ଏହି ସଂକୀର୍ତ୍ତନ ପ୍ରସାରଣରେ ଧର୍ମ ବା ଜାତିର କୌଣସି ପ୍ରତିବନ୍ଧକ ନଥାଏ । ସମାଜର ପ୍ରତ୍ୟେକ ବର୍ଗର ଲୋକ ଏଥିରେ ଭାଗ ନିଅନ୍ତି ଓ ସଂକୀର୍ତ୍ତନ ଯେଉଁ ଜନପଦମାନଙ୍କରେ ହୁଏ ବା ସେହିବାଟ ଦେଇ ଯାଏ, ସେଠାର ଲୋକମାନେ ସେହି ଦଳକୁ ଭକ୍ତିପୂତ ପ୍ରଣାମ ଜଣାଇଥାନ୍ତି । ତେଣୁ ସଂକୀର୍ତ୍ତନ ସମାଜ ମଧ୍ୟରେ ସମନ୍ୱୟ ଏବଂ ଭକ୍ତିଭାବ ପ୍ରସାର କରିବା ଦିଗରେ ଯଥେଷ୍ଟ ଭମିକା ନେଇଥାଏ । ହୁଏତ ବର୍ତ୍ତମାନ ଏହା କ୍ରମଶଃ ଲୋପ ପାଇଯିବା ପାଇଁ ଯାଉଛି ।

ପ୍ଲଟ୍ ନଂ-୧୧୮୧
ଦେବରାଜ ବିଦ୍ୟାପୀଠ ରୋଡ୍
ଗୋବିନ୍ଦ ପ୍ରସାଦ, ପୋ-ରସୁଲଗଡ଼, ଭୁବନେଶ୍ୱର

# ଶ୍ରୀମନ୍ଦିରର ଶ୍ରୀରାଧା

ଈଶ୍ୱର ଚନ୍ଦ୍ର ମହାପାତ୍ର

ଗୀତଗୋବିନ୍ଦର କାବ୍ୟ ବିନୋଦ ନାମଟି ଯେତେବେଳେ ସ୍ମରଣକୁ ଆସେ ଶିହରିତ ହୋଇଯାଏ ପାଠକର ତନ ଓ ମନ । ବୈଷ୍ଣବ ଜନର ପ୍ରାଣତନ୍ତ୍ରୀରେ ଖେଳିଯାଏ ଶ୍ରୀରାଧାକୃଷ୍ଣଙ୍କର ବିପ୍ରଲମ୍ଭ ଭାବର ଦୁଃଖ– ବିଧୌତ ଅନ୍ତର୍ବେଦନା । ଦ୍ୱାଦଶ ଶତାବ୍ଦୀରେ କବି ଜୟଦେବଙ୍କର ରଚିତ ଗୀତଗୋବିନ୍ଦ ସଂସ୍କୃତ ଭାଷାରେ ରଚିତ ହୋଇଥିଲେ ମଧ୍ୟ ସେଥିରେ ଯେଉଁ ସରଳ, ସହଜ ବୋଧଗମ୍ୟ ଶବ୍ଦ ସମ୍ଭାର ରହିଛି, ତାହା ସତେ ଯେପରି ଓଡ଼ିଆମାନଙ୍କ ପାଇଁ ଓଡ଼ିଆ, ବଙ୍ଗାଳୀମାନଙ୍କ ପାଇଁ ବଙ୍ଗଳା ଓ ଆସାମବାସୀ, ମୈଥିଳୀଭାଷୀଙ୍କ ପକ୍ଷେ ସ୍ୱ ମାତୃଭାଷାର ଭାବବ୍ୟଞ୍ଜନା ଉପଲବ୍ଧ କରାଉଛି । କାନ୍ତ, କୋମଳ ପଦାବଳୀରେ ଗୀତଗୋବିନ୍ଦର ପ୍ରତ୍ୟେକଟି ପ୍ରବନ୍ଧ (ଅଧ୍ୟାୟ)ରସାଣିତ ହୋଇଛନ୍ତି । କୃଷ୍ଣୈକ ପ୍ରାଣ କବି ଗାଇଛନ୍ତି ଧୀର ସମୀରେ ଯମୁନାତୀରେ ବସତି ବନେ ବନମାଳୀ, କେଡେ ସରଳ ଭାବବ୍ୟଞ୍ଜନାରେ ଅଭିବ୍ୟଞ୍ଜିତ ହୋଇଛି ଏପରି ଅନେକ ପଦର ଲାଳିତ୍ୟ ।

କବିଙ୍କ ଭାଷାରେ ମନ୍ଦନୀଳୟାନୀଳ ପୂରିତ ଯମୁନାର ସୁଶୀତଳ ଜଳ ଅନୁପମ ସୌନ୍ଦର୍ଯ୍ୟାନୁଭୂତିରେ ରାସେଶ୍ୱରୀ ବେଷ୍ଟିତ ଗୋପାଙ୍ଗନାମାନଙ୍କୁ କରିଛି ଉଭଳା ।

ଯମୁନାର ଜଳ ଲଳିତ ଲବଙ୍ଗଲତାର ସୁବାସରେ ମହକି ଯାଇଛି । କବି ଜୟଦେବ ବିରହିଣୀ ରାଧିକାର ମନକୁ ହାଲୁକା କରିବା ପାଇଁ ସଖୀ ମୁଖରେ ଗାଇଛନ୍ତି:

''ଲଳିତ ଲବଙ୍ଗଲତା ପରିଶୀଳନ
କୋମଳ ମଳୟ ସମୀରେ
ମଧୁକର ନିକର କରମ୍ବିତ କୋକିଳ
କୁଞ୍ଜିତ କୁଞ୍ଜ କୁଟୀରେ ।
ବିରହତି ହରି ରିହ ସରସ ବସନ୍ତେ,
ନୃତ୍ୟନ୍ତି ଯୁବତି ଜନେନ ସମଂ
ସଖୀ ବିରହ ଜନସ୍ୟ ଦୂରନ୍ତେ ।''

କେଡେ ମନମୋହନ ଏହି ପ୍ରାକୃତିକ ସୁଷମା ମଣ୍ଡିତ ବସନ୍ତର ରାସୋତ୍ସବ । ଏପରି ମଧୁର ପଦ ଲାଳିତ୍ୟଭରା ସାଂଗତିକ ରସ ମାଧୁର୍ଯ୍ୟ ପରିବେଷଣରେ ଜୟଦେବ ସିଦ୍ଧହସ୍ତ ଥିଲେ ।

ଦାକ୍ଷିଣାତ୍ୟର ଜନୈକ ଜଗନ୍ନାଥ ଭକ୍ତ ବ୍ରାହ୍ମଣ ଦେବଶର୍ମା ତୀର୍ଥାଟନରେ ଶ୍ରୀକ୍ଷେତ୍ରକୁ ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଆସନ୍ତି । ସାଥୀରେ ଆଣିଥାନ୍ତି ନିଜର ରୂପବତୀ, ଭଗବତାଶ୍ରୟୀ କନ୍ୟା ପଦ୍ମାବତୀଙ୍କୁ । ଦର୍ଶନାନ୍ତେ ସେ ପଦ୍ମାବତୀଙ୍କୁ ଟେକି ଦିଅନ୍ତି ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ । ମାତ୍ର ତାହା ଗ୍ରହଣ ନକରି ପ୍ରଭୁ ନୀଳାଚଳ ନିବାସୀ ଜଗନ୍ନାଥ ଦେବଶର୍ମାଙ୍କୁ ସ୍ୱପ୍ନାଦେଶ କଲେ । ଦେବଶର୍ମା ପଦ୍ମାବତୀକୁ ମୋତେ ନୁହେଁ, ମୋର ପ୍ରିୟ ଭକ୍ତ ଶିରୋମଣି ଜୟଦେବ ସହିତ ତାହାର ଶୁଭ ପରିଣୟ କରାଅ, ଏଥିରେ ପଦ୍ମାବତୀର ଦୁଇଟି କାର୍ଯ୍ୟ ସାଧିତ ହେବ । ତାହାରି ସାହଚର୍ଯ୍ୟରେ, ପ୍ରେରଣାରେ ଜୟଦେବ ସାରସ୍ୱତ ଅକ୍ଷୟକୀର୍ତ୍ତି ସ୍ଥାପନ କରିବ । ତାହାହିଁ ହେଲା, ଜୟଦେବଙ୍କର ରଚନାତ୍ମକ ସାରସ୍ୱତ ସୃଷ୍ଟି ପଦ୍ମାବତୀଙ୍କର ଲଳିତ ସଂଗୀତର ମୂର୍ଚ୍ଛନା ମହିମାନ୍ୱିତ କରିଦେଲା । ବିଦିଗ୍ଧ କବି ପତିଙ୍କର ପ୍ରତ୍ୟେକ କାର୍ଯ୍ୟରେ ପଦ୍ମାବତୀଙ୍କର ସହଯୋଗିତା, ସହକର୍ମିଣୀତ୍ୱ ତାଙ୍କର ଯଶକୁ ଦ୍ୱିଗୁଣିତ କରିଦେଲା । ଦ୍ୱିତୀୟ ଉଦ୍ଦେଶ୍ୟ ମାହାରୀ ସେବା ମଧ୍ୟ ସଫଳ ହେଲା ।

ପଦ୍ମାବତୀ ଜଗନ୍ନାଥାଶ୍ରୟୀ ହୋଇଥିଲେ ମଧ୍ୟ ପତି ଅନୁରକ୍ତା ଥିଲେ । ପତିଙ୍କୁ ଯାହା ଅର୍ପଣ କରୁଥିଲେ, ତାହା ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ସମର୍ପିତ ଥିଲା । ପତି ଆଉ ପରାଣପତି ଜଗନ୍ନାଥଙ୍କ ମଧ୍ୟରେ ସେ କୌଣସି ପ୍ରଭେଦ ଦେଖୁନଥିଲେ, ତାଙ୍କ ପାଇଁ ଗଢିଥିଲେ ସୁଖର ନିଦାନ । ମାତ୍ର ଜଗନ୍ନାଥ ଥିଲେ ମୁକ୍ତିର ଆଶ୍ରୟ, ନୟନର

ପଥଗାମୀ, ପତିଦେବତାଙ୍କ ପ୍ରତି ଅଚଳା ଭକ୍ତି, ଜଗନ୍ନାଥଙ୍କ ପ୍ରତି ଅତୁଟ ସମର୍ପଣ ଭାବରେ ପଦ୍ମାବତୀ ଥିଲେ ସ୍ୱୟଂ ସମ୍ପୂର୍ଣ୍ଣା । ଜଗନ୍ନାଥଙ୍କ ମଧ୍ୟରେ ପଦ୍ମାବତୀ ଶ୍ରୀକୃଷ୍ଣଙ୍କୁ ଦେଖିପାରୁଥିଲେ । ଅନୁଭବ କରୁଥିଲେ ଜଗନ୍ନାଥ-ଶ୍ରୀକୃଷ୍ଣଙ୍କର ଅଭିନ୍ନତା, ଏକରୂପତା ।

ପଦ୍ମାବତୀଙ୍କଠାରୁ ଦେବଦାସୀ ପ୍ରଥା ପ୍ରଥମରେ ଆରମ୍ଭ ହୋଇଥିଲା । ଶ୍ରୀମନ୍ଦିରରେ ମାହାରୀ ନୃତ୍ୟ ପରମ୍ପରା ସେହିଦିନଠାରୁ ପ୍ରସରି ଆସୁଛି। ଏବେ ଉତ୍ସର୍ଗୀକୃତ ଦେବଦାସୀ ମିଳୁନଥିବାରୁ ଶୃଙ୍ଗାରୀ ଭାବମୋଦକର ଗୋଟିଏ ପରମ୍ପରାର ବିଲୟ ଘଟିବାକୁ ଯାଉଛି । ପଦ୍ମାବତୀ ଶ୍ରୀରାଧାଙ୍କର ବିଶୁଦ୍ଧ ପ୍ରେମ- ଭକ୍ତିର ଆଶ୍ରିତା ଥିଲେ । ପ୍ରାଣପ୍ରିୟ ଜଗନ୍ନାଥ ଯେ ସ୍ୱୟଂ ଶ୍ରୀକୃଷ୍ଣ ଏଥିରେ ସେ ଦୃଢ ଚିତ୍ତ ଥିଲେ । ପତିଦେବତା ଜୟଦେବ ଯେଉଁ ବିପ୍ରଲମ୍ଭ ରସ ସମ୍ବର୍ଦ୍ଧିତ- ବିରହରାଗିଣୀ ନିକ୍ୱଣିତ କାବ୍ୟ-ହର୍ମ୍ୟ ତୋଳିଥିଲେ, ତାହାର ପ୍ରଚାର ପ୍ରସାରରେ ପଦ୍ମାବତୀଙ୍କର ଭୂମିକା କମ୍ ନଥିଲା । ବିରହ ବେଦନା ବିଚ୍ଛୁରିତ କାବ୍ୟକଳାକୁ ନାଟ୍ୟରୂପ ଦେବାରେ ତାଙ୍କର ନିପୁଣ ଅଭିନୟ ଶୈଳୀ ବେଶ ଜନାଦୃତି ଲାଭ କରିଥିଲା। ନୂପୁରର ଝୁମଝୁମକା ତାନମାନରେ ସେ ବିରହ ବେଦନା ଶ୍ରୀରାଧାଙ୍କର ପ୍ରତିଟି ଆଙ୍ଗିକ ବିଭାବକୁ ମର୍ମସ୍ପର୍ଶୀ ଢଙ୍ଗରେ ନୃତ୍ୟାଭିନୟ କରି ଜନମନ ହରଣ କରୁଥିଲେ । ପଦ୍ମାବତୀଙ୍କର ନୃତ୍ୟର ଅପୂର୍ବ ଆଙ୍ଗିକ ମୁଦ୍ରାର ରସୋତ୍ତୀର୍ଣ୍ଣ ନୃତ୍ୟଛଟାକୁ ଶତଗୁଣେ ବର୍ଦ୍ଧନ କରୁଥିଲା ଜୟଦେବଙ୍କ ଲଳିତ ମଧୁର କଣ୍ଠରେ ରାଧା-ମାଧବଙ୍କର ପ୍ରଣୟ, ତ୍ୟାଗ, ତପସ୍ୟା, ବିରହବେଦନା, ବିଚ୍ଛେଦ-ମିଳନର କରୁଣସିକ୍ତ ସୁରଝଙ୍କାର, ଶ୍ରୀରାଧା-ଶ୍ରୀକୃଷ୍ଣଙ୍କର ଶାଶ୍ୱତ ପ୍ରେମକାହାଣୀକୁ ଜୀବନ୍ତ ରୂପଦେଇ ଜୟଦେବ ବୈଷ୍ଣବ କାବ୍ୟ ଧାରାକୁ ମହିମାନ୍ୱିତ କରିଛନ୍ତି ରସାଣିତ କରିଛନ୍ତି ।

ଭଗବାନ ଭକ୍ତର ଅଧୀନ । ଭକ୍ତର ଭକ୍ତିରେ ସ୍ତୁତିରେ ସେ ନିଜକୁ ହଜେଇ ଦିଅନ୍ତି । ବାନ୍ଧି ହୋଇଯାନ୍ତି ଭକ୍ତିର ରଜ୍ଜୁରେ । ତନ୍ମୟ ହୋଇଯାନ୍ତି ସମର୍ପଣ ଭାବ-ଅର୍ଘ୍ୟରେ । ଭକ୍ତ କବି ଜୟଦେବ ଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ଏକୀଭୂତ ରୂପରେ ଆରାଧନା କରିଛନ୍ତି । ଜଗନ୍ନାଥ ନିଶ୍ଚିତ ରୂପେ ରାଧାକୃଷ୍ଣଙ୍କର ସମ୍ମିଳିତ ବିଗ୍ରହ । ଏହି ଏକରୂପକତାକୁ ବିଶ୍ୱାସ କରି ଜୟଦେବ ଗୀତଗୋବିନ୍ଦ ରଚନା ମାଧ୍ୟମରେ ରାସରାଜେଶ୍ୱର ଶ୍ରୀକୃଷ୍ଣ ଏବଂ ରାସେଶ୍ୱରୀ ଶ୍ରୀରାଧାଙ୍କର ବିରହ-ବେଦନାଗ୍ରସ୍ତ ଲୀଳାକୁ ବର୍ଣ୍ଣନା କରି ଶାଶ୍ୱତ ମିଳନର ଯଜ୍ଞବେଦୀରେ ଅପୂର୍ବ ରାଗରାଗିଣୀ ସମନ୍ୱିତ କାବ୍ୟମାଳାକୁ ଅର୍ପଣ କରିଛନ୍ତି ।

ଜୟଦେବଙ୍କ ମତରେ ଜଗନ୍ନାଥ ହେଉଛନ୍ତି ପ୍ରକୃତି- ପୁରୁଷର ଏକାତ୍ମିକ ରୂପ । ତାଙ୍କୁ ଲାଭ କରାଯାଇପାରିବ ସୁଧାଭକ୍ତିର ଆତ୍ମନିବେଦନରେ । ଜୟଦେବଙ୍କର କାବ୍ୟ ନାୟକ ହେଉଛନ୍ତି କୃଷ୍ଣୈକ ସତ୍ତାତ୍ମକ ଜଗନ୍ନାଥ । ନାୟିକା ହେଉଛନ୍ତି ଅପାର୍ଥିବ ପ୍ରେମପାଗଳିନୀ ଶ୍ରୀରାଧା । ଶ୍ରୀରାଧା, ଶ୍ରୀକୃଷ୍ଣ (ଜଗନ୍ନାଥ)ଙ୍କୁ ଛାଡି ବୈଷ୍ଣବ ସାହିତ୍ୟ, ଜୀବନ ଦର୍ଶନ କଳ୍ପନା କରାଯାଇ ପାରେନା । ଶ୍ରୀରାଧା ହେଉଛନ୍ତି ଶ୍ରୀକୃଷ୍ଣଙ୍କର ଆହ୍ଲାଦିନୀ ଶକ୍ତି । ମାନସପ୍ରେମରେ ଶ୍ରୀରାଧା ତାଙ୍କର ଲୀଳା ସହଚରୀ ହୋଇଛନ୍ତି- ଭକ୍ତମାନଙ୍କୁ ରାଗାନୁଗା ଭକ୍ତି ଭାବରେ ଆମୋଦିତ କରିବା ପାଇଁ, ସୁଧାଭକ୍ତିର ରସସ୍ୱାଦନ କରାଇବା ପାଇଁ । ମହାଭାବ-ପ୍ଲାବିନୀ- ଆଦ୍ୟାଶକ୍ତି ଶ୍ରୀରାଧାଙ୍କର ପ୍ରକୃତ ତତ୍ତ୍ୱ ନଜାଣି ସହଜିଆ ପ୍ରେମ-ଉପାସକମାନେ ତାଙ୍କୁ ଅପବାଦର ନିଆଁରେ ଜାଳିପୋଡି ମାରିଛନ୍ତି । ଶକ୍ତିର ସାହାଯ୍ୟ ବିନା ଶକ୍ତିମାନଙ୍କର କ୍ରିୟାଶକ୍ତି ନିଷ୍ଫଳ । ଶକ୍ତିମତୀ ଶ୍ରୀରାଧା ଶକ୍ତିମାନଙ୍କର କ୍ରିୟାତ୍ମକ ଶକ୍ତିର ମୂଳଉତ୍ସ । ଆଦ୍ୟାଶକ୍ତିଙ୍କ ବିନା ସୃଷ୍ଟି ପାଳନ, ସଂହାର କ୍ରିୟା ଅସମ୍ଭବ । ଏହି ସୃଷ୍ଟି ତତ୍ତ୍ୱକୁ ଉପଜୀବ୍ୟ କରି ଜୟଦେବ କେଳି କୁଞ୍ଜ ନାୟିକା ଶ୍ରୀରାଧାଙ୍କର ମାନବୀକରଣ ମାଧ୍ୟମରେ ଜୀବ-ପରମର ମିଳନ କରାଇଛନ୍ତି ନାଟକୀୟ ଶୈଳୀରେ, ଉଦ୍ଦୀପନ ବିଭାବ ମଧ୍ୟରେ ସେ କୁଞ୍ଜବନର ପ୍ରାକୃତିକ ଶୋଭାକୁ ଚେତନା ଏବଂ ମନ ଉପରେ ପ୍ରଭାବଶାଳୀ କରି ପ୍ରେମାସିକ୍ତ କରିଛନ୍ତି ।

ଶ୍ରୀରାଧା ହେଉଛନ୍ତି ଜଗନ୍ନାଥଙ୍କର ଲୀଳା ସହଚରୀ, ଜଗନ୍ନାଥ ହେଉଛନ୍ତି ଶ୍ରୀରାଧାଙ୍କର ପ୍ରାଣସଂଗାତ । ରସକଲ୍ଲୋଳ ରଚୟିତା ଭକ୍ତକବି ଦୀନକୃଷ୍ଣଙ୍କ ଭାଷାରେ-

''ବନ୍ଦଇ ଦେବ ଜଗନ୍ନାଥ
ରାଧିକା ପ୍ରାଣର ସଙ୍ଗାତ
ଅଶେଷ ବ୍ରହ୍ମାଣ୍ଡ କାରଣୀ
ଭକତ ଜନ ଗୁଣ ମଣି,
ଲକ୍ଷ୍ମୀ ଦେବୀଙ୍କ ପ୍ରାଣନାହା
ଶୋଭିତ ଶଙ୍ଖ ଚକ୍ର ବାହା''

ପରମେଶ୍ୱରୀ, ପରମ ପାବନୀ, ତାପ, ପାପ ବିନାଶିନୀ, ଜଗତ କଲ୍ୟାଣୀ, ନାରାୟଣୀଙ୍କ ବିନା ଜଗତ ଈଶ୍ୱର ସୃଷ୍ଟି କ୍ରିୟାରେ ଅସମର୍ଥ ଅଟନ୍ତି ।

ପଦ୍ମାବତୀ ଶ୍ରୀରାଧାଙ୍କର ଶ୍ରୀକୃଷ୍ଣ ପ୍ରତିରୂପ ଜଗନ୍ନାଥଙ୍କ ପ୍ରତି ଥିବା ରାଗାନୁଗା ପ୍ରେମର ପୂଜାରିଣୀ ଥିଲେ । ଦିନେ ରାୟ ରମାନନ୍ଦଙ୍କୁ ଜଣେ ଭକ୍ତ ପଚାରିଛି- ସମ୍ପତ୍ତି ମଧ୍ୟେ ଜୀବେର କୋନ ସମ୍ପତ୍ତି ଗନି ? ରାୟ ରାମାନନ୍ଦ ଉତ୍ତର ଦେଇଥିଲେ- ରାଧାକୃଷ୍ଣ

ପ୍ରେମ ସାର, ସେଇ ବଡଧନୀ, ପୁଣି ପଚାରିଛି ଭକ୍ତ- ଶ୍ରେୟୋମଧ୍ୟେ କୋନ ଶ୍ରେୟଃ ଜୀବେର ହୋୟ ସାର ? ରାୟ ରମାନନ୍ଦ ଉତ୍ତର ଦେଇଥିଲେ କୃଷ୍ଣଭକ୍ତ ସଙ୍ଗ ବିନା ଶ୍ରେୟ ନାହିଁ । ସଂସର୍ଗଦା ଦୋଷାଗୁଣ ଭବନ୍ତି ନ୍ୟାୟରେ କୃଷ୍ଣଭକ୍ତଙ୍କର ସଂସ୍ପର୍ଶରେ ଆସିଲେ ମନୁଷ୍ୟ ଶ୍ରେୟ ପଥାଚାରୀ ହେବା ସହଜ ହୋଇଥାଏ ।

ପଦ୍ମାବତୀ ପତି ଜୟଦେବଙ୍କର ସଂସ୍ପର୍ଶରେ ଆସି ପ୍ରଭାବିତ ହୋଇଛନ୍ତି ଜଗନ୍ନାଥଙ୍କ ଚରଣତଳେ ନିଜକୁ ସମର୍ପି ଦେବାକୁ । ସମର୍ପଣ ଭାବରେ ସେ ଶ୍ରୀରାଧାଙ୍କ ସଦୃଶ ଜଗନ୍ନାଥଙ୍କୁ ପରଷି ଦେଇଛନ୍ତି ନୃତ୍ୟ ମାଧ୍ୟମରେ ଦିବ୍ୟାନନ୍ଦ । ନୃତ୍ୟପଟ୍ଟୟସୀ ଶ୍ରୀରାଧାଙ୍କର ଆତ୍ମନିବେଦନର ଭାବତରଙ୍ଗରେ ପଦ୍ମାବତୀ ହିଲ୍ଲୋଳିତା ହୋଇ ରାଧାଭାବରେ ଶ୍ରୀକୃଷ୍ଣଙ୍କର ଚିତ୍ତ ବିନୋଦନ ପାଇଁ ପାଦରେ ଘୁଙ୍ଗୁର ବାନ୍ଧନ୍ତି । ନିଜକୁ ସଜେଇ ଦିଅନ୍ତି ଶ୍ରୀକୃଷ୍ଣଙ୍କର ପ୍ରେମିକା ରୂପରେ । ଓଡ଼ିଶୀ ନୃତ୍ୟର ତାଳେତାଳେ ଝୁମିଯାଏ ଶ୍ରୀମନ୍ଦିରର ଆଧ୍ୟାତ୍ମିକ ପରିବେଶ । ସ୍ୱାମୀ ଜୟଦେବଙ୍କର ବାଦ୍ୟ ଝଙ୍କାର ସହିତ ଲଳିତ କଣ୍ଠରେ ଗୀତଗୋବିନ୍ଦ ଗାନ ପଦ୍ମାବତୀଙ୍କର ନୃତ୍ୟଭଙ୍ଗୀକୁ ଦ୍ୱିଗୁଣିତ କରି ଅନିର୍ବଚନୀୟ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି କରୁଥିଲା । ଶ୍ରୀରାଧା ଥିଲେ ପଦ୍ମାବତୀଙ୍କର ଉପଜୀବ୍ୟ, ଶ୍ରୀରାଧାଙ୍କ ଭଳି ପଦ୍ମାବତୀ କ'ଣ ଚାହିଁନଥିବେ ଶ୍ରୀକୃଷ୍ଣଙ୍କର ନିତ୍ୟଲୀଳା ପ୍ରେୟସୀ ହେବାକୁ ? ଏପରି ଆସ୍ପର୍ଦ୍ଧା କରିବା କ'ଣ ଅମୂଳକ ? ଶ୍ରୀରାଧାଙ୍କଠାରୁ ସେ କେଉଁ ଗୁଣରେ କମ କି ? ଶ୍ରୀରାଧାଙ୍କର ସ୍ୱାମୀ ଥାଇ ସେ ଶ୍ରୀକୃଷ୍ଣଙ୍କର ପ୍ରେୟସୀ ହୋଇପାରିଲେ କିପରି ? ବଂଶୀର ଫାଙ୍କରେ ରାଧାନାମ ଶୁଣି ସେ ସମୟ ଅସମୟରେ ଦୌଡ଼ି ଯାଉଥିଲେ ଯମୁନାକୂଳକୁ, କଦମ୍ବ ମୂଳକୁ । ଏଥିପାଇଁ ତାଙ୍କ ସ୍ୱାମୀ ଚନ୍ଦ୍ରସେଣା କ'ଣ ତାଙ୍କୁ ଅନୁମତି ଦେଇଥିଲେ । କିନ୍ତୁ ମୋର ସ୍ୱାମୀତ ଜଗନ୍ନାଥଙ୍କର ପ୍ରୀତାର୍ଥେ ମୋର ଗୋଡରେ ଘୁଙ୍ଗୁର ବାନ୍ଧି ଦିଅନ୍ତି । ପୀତାମ୍ବରୀ ପାଟକୁ ସଜାଡ଼ି ଦିଅନ୍ତି । ନୃତ୍ୟରେ ମୋର ତନ୍ମୟତା ଆଣିବା ପାଇଁ ସେ ଓଡିଶୀ ନୃତ୍ୟର ତାନ, ମାନ ଡାକି ମନମତାଣିଆ ଢୋଲ ବଜାଇ ଦିଅନ୍ତି । ଶ୍ରୀରାଧାଙ୍କ ଭଳି ମହାଭାବରେ ବୁଡିଯିବାର ଯଦିଓ ସେ ଧୃଷ୍ଟତା କରିପାରିବେ ନାହିଁ ତଥାପି ତାଙ୍କର ପିତା ପ୍ରଥମେ ତାଙ୍କୁ ଭଗବାନ ଜଗନ୍ନାଥଙ୍କୁ ସମର୍ପଣ କରି ଦେଇଥିବାରୁ ପିତାଙ୍କର ସତ୍ୟବଚନର ସ୍ୱୀକୃତି ସ୍ୱରୂପ ସେ ଜଗନ୍ନାଥଙ୍କର ଚରଣାଶ୍ରିତ ହୋଇଯାଇଛନ୍ତି । ପତିଙ୍କର ହୃଦୟରେ ଜଗନ୍ନାଥଙ୍କୁ ଦର୍ଶନ କରି ସେ ତାଙ୍କର ହୋଇଯାଇଛି । ପତିଦେବତାଙ୍କର ପରାଣପତି ଶ୍ରୀପତି କ'ଣ ମୋର ପତି ବୋଲି ମୁଁ କହିପାରିବି ନାହିଁ ?

ପଦ୍ମାବତୀ କହନ୍ତି ମୋର ପତିଦେବତା ଶ୍ରୀଜୟଦେବ ଜଣେ ଉତ୍ସର୍ଗୀକୃତ ବୈଷ୍ଣବାଗ୍ରଗଣ୍ୟ, ସୁଧାଭକ୍ତିର ଉପାସକ ସେ । ରାଧାକୃଷ୍ଣଙ୍କର ପରମ ପୂଜାରୀ ସେ । ତାଙ୍କର ସାଂଗୀତିକ ତାଳେ ତାଳେ ନାଚିଯିବାକୁ କହି ସେ ଯେତେବେଳେ ସୁଲଳିତ କଣ୍ଠରେ ବୋଲନ୍ତି-

''ଲଳିତ ଲବଙ୍ଗ ଲତା ପରିଶୀଳନ କୋମଳମୟ ସମୀରେ<br>
ମଧୁକର ନିକର କରମ୍ବିତ କୋକିଳ କୂଜିତ କୁଞ୍ଜ କୁଟୀରେ<br>
ବିରହତି ହରିରିହ ସରସ ବସନ୍ତେ<br>
ନୃତ୍ୟତି ଯୁବତୀ ଜନେନ ସମଂସଖୀ<br>
ବିରହୀତ ଜନସ୍ୟ ଦୂରନ୍ତେ ।''

ମୁଁ ତାହାର ଅପୂର୍ବ ରାଗିଣୀରେ ନାଚିଯାଏ । ଶ୍ରୀରାଧା ଭାବରେ ଶିହରିଯାଏ । ମୋର ନୂପୁର ଧ୍ୱନିର ନିକ୍ୱଣରେ ଆତ୍ମହରା ହୋଇଯାନ୍ତି ମୋର ପତି ଦେବତା ।

ରାଧାଭାବରେ ଉତ୍ତଳା ହୋଇ କୃଷ୍ଣୈକ ପ୍ରାଣା ପଦ୍ମାବତୀ ଦିନେ ଅପୂର୍ବ ପରିପାଟୀରେ ନିଜକୁ ସଜେଇ ଦେଲେ । ସଂଚରୀ ଭାବର ଅନୁରାଗିଣୀ ପଦ୍ମାବତୀଙ୍କର ପ୍ରାଣତନ୍ତ୍ରୀରେ ଭାବ-ମାଦକତାର ଅପୂର୍ବ ଶିହରଣ ଖେଳିଗଲା । ମହାଭାବରେ ସେ ଆଜି ଜଗନ୍ନାଥଙ୍କୁ ନୃତ୍ୟ ମାଧ୍ୟମରେ ଭେଟି ଦେବେ ନିଜର ସଂଚିତ ନୃତ୍ୟ କଳାକୁଶଳ, ଅନ୍ତରର ଭକ୍ତି-କୁସୁମ, ରାଧାଭାବ, ବିମୋହିତ ପଦ୍ମାବତୀଙ୍କର ପଦରେ ନୂପୁର, ବାହୁରେ କେୟୂର, ଶିରରେ ତୁଳସୀର ଝୁମ୍ପା, ଗଳାରେ ସୁବାସିତ କୁସୁମର ଗଜରାର ହାର, କର୍ଣ୍ଣରେ ହେନା ଫୁଲର ଝରା, କଟୀରେ ପାଟପିତାମ୍ବରୀ, ନୟନରେ ବାଙ୍କ କଟାକ୍ଷ ଅତିକ୍ରିୟ ଶିହରଣ ସୃଷ୍ଟି କରୁଛି । ପଦ୍ମାବତୀଙ୍କର ଏପରି ବିମୋହନ ବେଶ ଦେଖି ଜୟଦେବ ଆଶ୍ଚର୍ଯ୍ୟରେ ନୟନ ବିସ୍ଫାରିତ କରି କହିଛନ୍ତି । ଏ କି ଅନିନ୍ଦ୍ୟ ବେଶ ତୁମର ପଦ୍ମାବତୀ ? ତୁମେ କ'ଣ ମୋର ପ୍ରାଣପତିଙ୍କୁ ତୁମର କରିନେବାକୁ ଏପରି ନବୀନବେଶ ଧାରଣ କରିଛ ?

କୃଷ୍ଣେକପ୍ରାଣା ପଦ୍ମାବତୀଙ୍କୁ ଶ୍ରୀରାଧାର ମହାଭାବ ଆଜି ପାଗଳ କରିଛି । ସେ ହୋଇଛନ୍ତି ଉନ୍ମାଦିନୀ । ମହାଭାବ-ଉତ୍ତଳା ପଦ୍ମାବତୀଙ୍କର ଦୃଷ୍ଟିପଥରେ ଗୋଚର ହୋଇଛି ରାଧାକୃଷ୍ଣଙ୍କର ଯୁଗଳବନ୍ଦୀର ମନୋହର ବେଶ । ପଦ୍ମାବତୀଙ୍କର ନିଟୋଳ ନେତ୍ରରେ କେରାକେରା ଲୋତକ ଶ୍ରାବଣୀ ଦେଖି ଜୟଦେବ ଜାଣିପାରିଛନ୍ତି ରାଧାଭାବରେ ପଦ୍ମାବତୀ ଆତ୍ମବିସ୍ମୃତି

ହୋଇଛନ୍ତି । ତାଙ୍କର ସମ୍ବିତ ଫେରାଇ ଆଣିବାକୁ ଜୟଦେବ ଢୋଲକ ବାଦ୍ୟର ତାଳେତାଳେ ଗାଇଛନ୍ତି:

ଚନ୍ଦନ ଚର୍ଚ୍ଚିତ ନୀଳ କଳେବର
ପୀତ ବସନ ବନମାଳୀ,
କେଳିଚଳନ ମଣିକୁଣ୍ଡଳ ମଣ୍ଡିତ
ଗଣ୍ଡଯୁଗ ସ୍ମିତଶାଳୀ ॥
ହରିରିହ ମୁଗ୍ଧ ବଧୂନିକରେ
ବିଳାସିନି ବିଳସତି କେଳିପରେ ।

ଭଗବାନ ଶ୍ରୀକୃଷ୍ଣଙ୍କର ଚନ୍ଦନଚର୍ଚ୍ଚିତ ନୀଳକଳେବର, ପୀତବସନର ମନଲୋଭା ଦୃଶ୍ୟର ଜୀବନ୍ତ ଛବି ଉଦ୍ଭାସିତ ହୋଇଛି ପଦ୍ମାବତୀଙ୍କର ମାନସପଟରେ । ଶ୍ରୀରାଧାଙ୍କର କୃଷ୍ଣାଲିଙ୍ଗନର ପ୍ରେମଉପଚାର ତାଙ୍କର ମନରେ ଜୀବ-ପରମର ମିଳନ ଦୃଶ୍ୟ ଅଙ୍କନ କରିଛି । ମହାଭାବ ସ୍ୱରୂପିଣୀ ଶ୍ରୀରାଧାଙ୍କର ଲୀଳା ମାଧୁର୍ଯ୍ୟ ନୃତ୍ୟଗୀତ ମାଧ୍ୟମରେ ପରିସ୍ଫୁଟ କରି ପଦ୍ମାବତୀ ନିଜକୁ ଭାଗ୍ୟବତୀ ମନେ କରିଛନ୍ତି ।

ଶ୍ରୀରାଧା ଭାବ-ଉଦ୍ଭଳା ପଦ୍ମାବତୀଙ୍କର ଚକ୍ଷୁରେ ଆନନ୍ଦାଶ୍ରୁର ପ୍ଲାବନ ରାଧା ହେଉଛନ୍ତି ବୃନ୍ଦାବନେଶ୍ୱରୀ, ବୃନ୍ଦାବନର ନିତ୍ୟଲୀଳାର କେନ୍ଦ୍ରବିନ୍ଦୁ ହେଉଛନ୍ତି ଶ୍ରୀରାଧାରାଣୀ । ପୁରୁଷୋତ୍ତମ କ୍ଷେତ୍ରକୁ ନିତ୍ୟବୃନ୍ଦାବନ ବୋଲି କୁହାଯାଏ। ପୁରୁଷୋତ୍ତମ କ୍ଷେତ୍ରରେ କ୍ଷେତ୍ରାଧିପତି ହେଉଛନ୍ତି ଶ୍ରୀଜଗନ୍ନାଥ, ଏଠାରେ ନିତ୍ୟଲୀଳା ଚାଲିଛି, ବାରମାସରେ ତେର ଯାତରା ମହୋତ୍ସବ ଲାଗି ରହିଛି । ଏପରି ପାବନ କ୍ଷେତ୍ରରେ ସଂସାର- ଜଞ୍ଜାଳରେ ସେ ଗ୍ରଥିତ । ତାଙ୍କର ସଂସାର ମୋହଗ୍ରସ୍ତ ଶରୀରରେ ଆହ୍ଲାଦିନୀଶକ୍ତି ଜାଗ୍ରତ ହେବ କିପରି ? ଆହ୍ଲାଦିନୀଶକ୍ତିର ତ ଏକମାତ୍ର ଅଧିକାରିଣୀ ଶ୍ରୀରାଧା । ସେ ଭଗବାନ ଶ୍ରୀକୃଷ୍ଣଙ୍କୁ ଯେଉଁ ବ୍ରହ୍ମାନନ୍ଦ ଦିଅନ୍ତି ତାହା ଆଉ କିଏ ଦେଇପାରିବ ? କାହିଁ କଲ୍ୟାଣମୟୀ, ଜଗଦିଶ୍ୱରୀ ଶ୍ରୀରାଧା ଆଉ ସିଏ ? ଚକାଡୋଳା କ'ଣ ତାଙ୍କ ନୃତ୍ୟରେ ପ୍ରୀତ ହୁଅନ୍ତି ? ଆତ୍ମବିସ୍ମୃତ ହୁଅନ୍ତି ? ନା, ସେ ଭାଗ୍ୟ କାହିଁ ତାଙ୍କର ? ସେ ବ୍ରହ୍ମପୁରୁଷଙ୍କୁ କେବଳ ନୃତ୍ୟ ମାଧ୍ୟମରେ କ'ଣ ବାନ୍ଧିହେବ ?

ଜୟଦେବ ଦେଖିଲେ ପଦ୍ମାବତୀ ବିଷନ୍ନ ବଦନ । କ'ଣ ହୋଇପାରେ ତାହାର କାରଣ ? ପଦ୍ମାବତୀଙ୍କର ଅବଚେତନ ମନକୁ ପ୍ରକୃତିସ୍ଥ କରିବା ପାଇଁ ଜୟଦେବ ଦଶାବତୀର ଶ୍ଳୋକରୁ ଗୋଟିଏ ଆବୃତ୍ତି କରି ତାନ ତୋଳିଲେ । ଡାକିଲେ ବୋଲ୍ ତେରେଖିଟି ଝାଁ, ତେରେଖିଟି ଝାଁ। ସ୍ଥିର ହୋଇ ପାରିଲେ ନାହିଁ ପଦ୍ମାବତୀ ସ୍ୱାମୀଙ୍କର ବାଦ୍ୟ ଝଙ୍କାରରେ । ଚାରିସରିଆ ଘୁଙ୍ଗୁରମାଳ ନିକ୍ୱଣିତ ହୋଇଉଠିଲା, ଅପୂର୍ବ ଶିହରଣରେ ନାଚି ଚାଲିଲେ ପଦ୍ମାବତୀ । ଜୟଦେବ ପୁଣି ଗାଇଲେ-

''ଶ୍ରିତ କମଳାକୁଚ ମଣ୍ଡଳ ଧୃତ କୁଣ୍ଡଳ ହେ
କଳିତ ଲଳିତ ବନମାଳ, ଜୟ ଜୟ ଦେବ ହରେ ।''

ଗୀତ ଶେଷରେ ପୁଣି ଗୋଟିଏ ବୋଲ୍- ଚାଡିତାକ ତେରେ ଖେଟେ ଝାଁ । ଚାଡିତାକ ତେରେ ଖେଟେ ଝାଁ । ଯେତେବେଳେ ତାଳ ଡାକି ସେ ବାଦ୍ୟ ନିନାଦ କଲେ ପଦ୍ମାବତୀ ନିଜକୁ ସମ୍ଭାଳି ନପାରି ସମସ୍ତ ନୃତ୍ୟ ନିପୁଣତା ଖଟାଇ ନାଚି ଉଠିଲେ ବିଭିନ୍ନ ମୁଦ୍ରାରେ । ଏଥର ତାଙ୍କର ଶରୀର ଭାଷା ଅପୂର୍ବ ମୁଦ୍ରାର ବିମୋହନ ଛଟା । ମନୋରମ ପରିପାଟୀର ଅତିନ୍ଦ୍ରିୟତା ଏମିତି ବିସ୍ମୟ କଳାତ୍ମକତା ସୃଷ୍ଟିକଲା ଯେ ନିଜେ ଜୟଦେବ ପଦ୍ମାବତୀଙ୍କର ଭାବବିନୋଦରେ ନୟନ ବିସ୍ଫାରିତ ହୋଇଗଲେ । ଭାବବିନୋଦିଆଙ୍କର ଚରଣରେ ନିଜକୁ ସମ୍ପୂର୍ଣ୍ଣ ସମର୍ପି ଦେଇ ପଦ୍ମାବତୀ ନାଚି ନାଚି ସମ୍ବିତ ହରାଇ ଲୋଟିପଡିଲେ ଜଗନ୍ନାଥଙ୍କ ଆଡକୁ ଯୋଡହସ୍ତ ପ୍ରସାରି । ଭାବବିନୋଦିଆଙ୍କର ଭାବବନ୍ଧନରେ ପଦ୍ମାବତୀଙ୍କର ମୂର୍ଚ୍ଛିତ ଅବସ୍ଥା ଦେଖି ଜୟଦେବ ଡାକିଲେ ଉଠ ପଦ୍ମାବତୀ । ତୁମର ଅହୋଭାଗ୍ୟ । ତୁମେ ରାସ ବିହାରୀଙ୍କୁ ଆପଣାର କରିପାରିଛ, ଯାହା ମୁଁ କରିପାରିନାହିଁ । ଧନ୍ୟ ତୁମେ ପଦ୍ମାବତୀ । ଧନ୍ୟ ତୁମର ସାଧନା, ତ୍ୟାଗ, ତପସ୍ୟା, ତୁମେ ପ୍ରକୃତରେ ଶ୍ରୀମନ୍ଦିରର ଶ୍ରୀରାଧା ।

ସୁ. ସରବେରଣି
ପୋ.ଅ.- ସାଆନ୍ଦା
ଜିଲ୍ଲା- ଢେଙ୍କାନାଳ, ପିନ୍- ୭୫୯୦୧୯

# ନ ସୋ ରମଣ, ନ ହମ୍ ରମଣୀ

ପୁଷ୍ପାଞ୍ଜଳି ପାଇକରାୟ

ପଞ୍ଚଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ପୁରୀ ଶ୍ରୀକ୍ଷେତ୍ରରୁ ନବୋତ୍ପନ୍ନ ନବ-ବୈଷ୍ଣବ ଧର୍ମର ପ୍ରେମ ଲହରୀ କ୍ରମେ ନଦିୟାସ୍ଥ ନବଦ୍ୱୀପ, ଉତ୍ତରରେ ବୃନ୍ଦାବନ ଓ ସମଗ୍ର ଦକ୍ଷିଣ ଭାରତକୁ ତରଙ୍ଗାୟିତ କରି ବସ୍ତୁତଃ ଭାରତୀୟ ଆଧାତ୍ମିକ ଆନ୍ଦୋଳନରେ ଏକ ନୂତନ ଜାଗରଣ ସୃଷ୍ଟି କରିପାରିଥିଲା । ଓଡ଼ିଶୀ-ବୈଷ୍ଣବ ଧର୍ମର ଏହି ନୂତନ ପ୍ରେମ ଭକ୍ତି ମାର୍ଗ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଜୟଦେବଙ୍କ ଦ୍ୱାରା ଲିଖିତ ଗୀତଗୋବିନ୍ଦକୁ ଅନୁସରଣ କରି ପରମ ବୈଷ୍ଣବ ରାୟ ରାମାନନ୍ଦ ପଟ୍ଟନାୟକ ପ୍ରଥମ କରି ଶ୍ରୀଚୈତନ୍ୟଙ୍କୁ ଶୁଣାଇଥିଲେ । ପରବର୍ତ୍ତୀ ସମୟରେ ଏହି ପ୍ରେମ- ଭକ୍ତି ସାଧନା ଭାରତୀୟମାନଙ୍କ ଅବକ୍ଷୟିଷ୍ଣୁ ତାମସିକ ଚେତନାରେ ଏକ ଅପୂର୍ବ ସଂସ୍କାର ଆଣି ନୂତନ ଧାର୍ମିକ ଚେତନାର ଊର୍ଦ୍ଧ୍ୱକୁ ନେଇଯାଇଥିଲା ।

ବହୁ ତତ୍ତ୍ୱବିତ୍ ଓ ଧର୍ମପ୍ରଚାରକଙ୍କ ପରି କୃଷ୍ଣ ପ୍ରାଣଗତ, ତତ୍ତ୍ୱଦର୍ଶୀ, ପ୍ରାଜ୍ଞ ଶ୍ରୀଚୈତନ୍ୟ ଏମିତି ଏକ ଐତିହାସିକ ଘଟଣାକ୍ରମରେ ନଦିୟା ଛାଡି ପୁରୀ ଚାଲିଆସିଥିଲେ । ରତ୍ନବେଦୀରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବା ସମୟରେ କୃଷ୍ଣଙ୍କ ସ୍ୱରୂପ ଆଖିଆଗରେ ଝଲସି ଉଠିଥିଲା ଓ ଚୈତନ୍ୟ ମୂର୍ଚ୍ଛା ଯାଇଥିଲେ । ସେହି ସମୟରେ ସେଠାରେ ଉପସ୍ଥିତ ଥିବା ଗଜପତି ମହାରାଜା ପ୍ରତାପରୁଦ୍ରଙ୍କ ରାଜସଭାର ପଣ୍ଡିତ ବାସୁଦେବ ସାର୍ବଭୌମ ଏପରି ଜଣେ ସ୍ୱଳ୍ପ ବୟସ୍କ, ସୌମ୍ୟକାନ୍ତ ସାଧୁଙ୍କ ଭକ୍ତିଭାବ ଲକ୍ଷ୍ୟ କରି ନିଜ ଘରକୁ ନେଇଆସିଥିଲେ । ସାର୍ବଭୌମଙ୍କ ଘରେ ସ୍ୱଳ୍ପକାଳ ରହଣୀ ସମୟରେ ଦର୍ଶନତତ୍ତ୍ୱ ସମ୍ପର୍କରେ ଦୁହିଁଙ୍କ ମଧ୍ୟରେ କଥୋପକଥନ ଛଳରେ ଯୁକ୍ତିତର୍କ ହୁଏ । ପଣ୍ଡିତ ସାର୍ବଭୌମ ଥିଲେ ଶଙ୍କରାଚାର୍ଯ୍ୟ ପନ୍ଥୀ ଅଦ୍ୱୈତବାଦୀ । ତେଣୁ ଚୈତନ୍ୟଙ୍କ ଦ୍ୱୈତବାଦ ତତ୍ତ୍ୱକୁ ସେ ଗ୍ରହଣ କରିପାରୁନଥିଲେ । ଦିନେ ଜୀବାତ୍ମାର ପରମାତ୍ମାଙ୍କ ସହ କିପରି ସମ୍ପର୍କ ସ୍ଥାପନ କରାଯାଇପାରିବ, ଏ ସମ୍ପର୍କରେ ବିଶ୍ଳେଷଣ କରୁ କରୁ ଚୈତନ୍ୟ ପଚାରିଥିଲେ, ''ଯଜ୍ଞ, ସ୍ୱାଧ୍ୟାୟ, ବେଦାନ୍ତ, ଉପନିଷଦ ଆଦି କଠିନ ଧର୍ମ ସାଧନ ବ୍ୟତିରକେ ଅନ୍ୟ କେଉଁ ମାର୍ଗରେ ଈଶ୍ୱରଙ୍କ ସହ ସମ୍ପର୍କ ସ୍ଥାପନ କରାଯାଇପାରେ ? ମଣିଷର ଈଶ୍ୱରଙ୍କ ପ୍ରତି ପ୍ରେମ, ଈଶ୍ୱର ପ୍ରାପ୍ତି କରିବାରେ ସହାୟକ ହୁଏ କି ? ଯଦି ସହାୟକ ହୁଏ, ତେବେ ସେ ଦିବ୍ୟାନୁଭୂତି କ'ଣ ଓ ଏହାର ପ୍ରାପ୍ତି କିପରି ସମ୍ଭବ ?

ଏକେଶ୍ୱରବାଦରେ ବିଶ୍ୱାସ ରଖୁଥିବା ପଣ୍ଡିତ ସାର୍ବଭୌମ ବାସୁଦେବ ସମ୍ଭ୍ରମତାର ସହ କହିଥିଲେ, ''ଆପଣ ଯେଉଁ ରହସ୍ୟମୟ ଉପଲବ୍ଧି କଥା କହୁଛନ୍ତି, ସେଥିରେ ମୋର ଏତେ ଜ୍ଞାନ ନାହିଁ। ପରନ୍ତୁ ଦକ୍ଷିଣରେ ରାଜମହେନ୍ଦ୍ରୀଠାରେ ରାୟ ରାମାନନ୍ଦ ଗଜପତିଙ୍କ ମୁଖ୍ୟ ପ୍ରଶାସକ ଭାବରେ ଅବସ୍ଥାପିତ ହୋଇଛନ୍ତି । ସେଥିରେ ତାଙ୍କର ଯଥେଷ୍ଟ ପ୍ରବେଶ ଅଛି । ଆପଣ ତାଙ୍କ ସହ ଦେଖା କରିପାରନ୍ତି। ଅବଶ୍ୟ ସୁଫଳ ମିଳିବ ।

ଜୀବ ଓ ପରମଙ୍କର ଅଲୌକିକ ସମ୍ବନ୍ଧ, ମାୟିକ ସଂସାରରୁ ଜୀବାତ୍ମାର ମୁକ୍ତି ଓ ପରମାତ୍ମାଙ୍କ ନିକଟରେ ସମ୍ପୂର୍ଣ୍ଣ ସମର୍ପଣ, ଏପରି ଗହନ ରହସ୍ୟକୁ ଜାଣିବା ପାଇଁ ଅନିସନ୍ଧିତ୍ସୁ ପରମଯୋଗୀ ଚୈତନ୍ୟ ଦାକ୍ଷିଣାତ୍ୟ ଯାତ୍ରା କଲେ । ଦିନେ ପ୍ରତ୍ୟୁଷରେ ଗୋଦାବରୀ ନଦୀରେ ସ୍ନାନ କରି ରାମାନନ୍ଦ ଫେରୁଥିବା ସମୟରେ ଚୈତନ୍ୟ ନଦୀତଟରେ ତାଙ୍କୁ ଭେଟିଲେ । କଥୋପକଥନ ଦ୍ୱାରା ଉଭୟେ ଯେ ପରମକାରୁଣିକ ସଚ୍ଚିଦାନନ୍ଦ ଶ୍ରୀକୃଷ୍ଣ ପ୍ରାଣଗତ, ଏହା ଉପଲବ୍ଧି କରିବାପରେ ଚୈତନ୍ୟ ପଚାରିଲେ, ''ହେ କୃଷ୍ଣପ୍ରାଣଗତ ରାୟ, ଦିବ୍ୟପ୍ରେମର ରହସ୍ୟ ବୁଝିବା ପାଇଁ ମୁଁ ପୁରୀରୁ ଏଠାକୁ ଧାଇଁ ଆସିଛି । ମୋତେ କୁହନ୍ତୁ, ମନୁଷ୍ୟ କେଉଁ ପ୍ରକାର ସାଧନା କଲେ କୃଷ୍ଣ ପ୍ରାପ୍ତି ହେବ ।''

ବୈଷ୍ଣବ ଧର୍ମରେ ପ୍ରେମଭକ୍ତିର ପାଞ୍ଚଗୋଟି ସାଧନା ଯଥା- ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ବା ରାଗ ସମ୍ବନ୍ଧରେ ଯଥେଷ୍ଟ ଜ୍ଞାନ ଆୟତ୍ତ କରିଥିବା ରାୟରାମାନନ୍ଦ କହିଲେ,

''ଶାନ୍ତ ମାର୍ଗରେ ସାଧନା କରୁ କରୁ ସାଧକର ମନ ଶାନ୍ତ ରସରେ ସମାହିତ ହେବ ଓ ସେ ଶ୍ରୀକୃଷ୍ଣଙ୍କୁ ପାଇପାରିବ ।

ସାଧୁ ଚୈତନ୍ୟ ଇନ୍ଦ୍ରିୟ ନିୟନ୍ତ୍ରଣ ରୂପକ ଶାନ୍ତ ମାର୍ଗ ସାଧନରେ ସିଦ୍ଧ ଥିଲେ । ତେଣୁ ସେ ଉତ୍ତରରେ କହିଲେ, ଏହା ଏକ ବାହ୍ୟ ସାଧନା । ଆଗକୁ କେଉଁ ସାଧନ ମାର୍ଗ ଅଛି ?

ରାମାନନ୍ଦ କହିଲେ, ଶାନ୍ତର ଗୁଣଗୁଡିକ ଦାସ୍ୟପ୍ରେମରେ ଏକାକାର କରି ସାଧକ ଦେହ, ମନ ଓ ପ୍ରାଣକୁ ଏକାଗ୍ର କରି ହନୁମାନଙ୍କ ପରି ଦାସ ଭାବରେ କୃଷ୍ଣଙ୍କ ସେବାରେ ନିୟୋଜିତ କଲେ ତେବେ ଯାଇ କୃଷ୍ଣ ପ୍ରାପ୍ତି ହେବ।

ସାଧକ ଚୈତନ୍ୟ ଦାସମାର୍ଗରେ ମଧ୍ୟ ସିଦ୍ଧ ଥିଲେ। ତେଣୁ ସେ ପଚାରିଲେ, '' ଏହାପରେ କ'ଣ ଅଛି'',

ରାମାନନ୍ଦ କହିଲେ,- ''ଶାନ୍ତ ଓ ଦାସ ଗୁଣର ସମାହାରକୁ ସାଧନ ମାର୍ଗରେ ଅର୍ଜୁନଙ୍କ ପରି ସଖ୍ୟପ୍ରେମରେ ରୂପାନ୍ତରିତ କରନ୍ତୁ। ସହଜରେ କୃଷ୍ଣ ପ୍ରାପ୍ତି ହେବ।''

ଚୈତନ୍ୟ ଉତ୍ତରରେ କହିଲେ, ''ଏହା ମଧ୍ୟ ବାହ୍ୟପ୍ରେମ। ଏ ସାଧନାମାର୍ଗ ଜୀବକୁ ଉନ୍ମୁଖ କରାଇବାରେ କଦାଚିତ୍ ସହାୟକ ହେବନାହିଁ।''

ରାମାନନ୍ଦ କ୍ଷଣିକ ନୀରବିଯାଇ କହିଲେ, ''ବାତ୍ସଲ୍ୟପ୍ରେମ ମାର୍ଗରେ ସାଧନା କରନ୍ତୁ, ଅବଶ୍ୟ ପ୍ରାପ୍ତି ହେବେ।''

ଶୈଶବରୁ ଯାହାଙ୍କର ପ୍ରାଣର ପ୍ରତିଟି ସ୍ପନ୍ଦନରେ କୃଷ୍ଣ ନାମ ଉଚ୍ଚାରିତ ହେଉଥିଲା, ସେହି ଯୋଗୀ ଶ୍ରୀଚୈତନ୍ୟ ତତ୍‌କ୍ଷଣାତ୍ ଉତ୍ତର ଦେଲେ, ''ଏହା ଏକ ଉତ୍ତରମାର୍ଗ। କିନ୍ତୁ ଏହା କ'ଣ ଅନ୍ତିମ ମାର୍ଗ ? ଏହାପରେ କ'ଣ ଅଛି କୁହନ୍ତୁ।''

ରାମାନନ୍ଦ କହିଲେ, ''ନିଜକୁ ନାରୀ ମନେ କରି ଗୋପୀ ଭାବରେ ଶ୍ରୀକୃଷ୍ଣଙ୍କୁ ପ୍ରେମ କର। ପୂର୍ଣ୍ଣ ଭାବରେ ପ୍ରାପ୍ତି ହେବ।'

ଚୈତନ୍ୟ ଉତ୍ତରରେ କହିଲେ, ଏ ତ ଅତି ଉତ୍ତମ ମାର୍ଗ, କିନ୍ତୁ ଏହାପରେ ଅନ୍ୟକିଛି ମାର୍ଗ ଅଛି କି ?

ଚୈତନ୍ୟଙ୍କ ମୁଖରୁ ଏହାଶୁଣି ରାମାନନ୍ଦ ବୁଝିପାରିଲେ ଯେ ଚୈତନ୍ୟ ଭାବାନୁସାରୀ ଭକ୍ତିମାର୍ଗର ଅନ୍ତିମ ପର୍ଯ୍ୟାୟରେ ପହଞ୍ଚି ସାରିଛନ୍ତି। ତଥାପି ଏହାଙ୍କର କୃଷ୍ଣପ୍ରାପ୍ତି ବୋଧରେ ତୃପ୍ତି ଆସିନାହିଁ। ଭାବ ବିହ୍ୱଳ ରାୟ ରାମାନନ୍ଦ ଚୈତନ୍ୟଙ୍କୁ କହିଲେ, ''ଆହ୍ଲାଦିନୀର ସାର ପ୍ରେମ, ପ୍ରେମ ସାର ଭାବ''।

ରାମାନନ୍ଦ କହିଚାଲିଲେ, ହେ ଭକ୍ତ ପ୍ରବର, ଗୋପୀମାନଙ୍କର ସାଧନା ସବୁଠାରୁ ଉତ୍କୃଷ୍ଟ । ଏଥିରେ କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗର ସମ୍ମିଶ୍ରଣ ଦେଖିବାକୁ ମିଳେ। ଅବଶ୍ୟ ତା'ର ଉନ୍ନୀତମାର୍ଗ ରାଧାଭାବ । ଯେହେତୁ ରାଧା ହେଉଛନ୍ତି ଗୋପୀଶ୍ରେଷ୍ଠା ଓ ସେ ହେଉଛନ୍ତି ଶ୍ରୀକୃଷ୍ଣଙ୍କ ଆହ୍ଲାଦିନୀ ଶକ୍ତି ସ୍ୱରୂପା। ରାଧାଭାବ ନେଇ ସାଧନା କଲେ ଅବଶ୍ୟ କୃଷ୍ଣଙ୍କ ସହ ଏକାତ୍ମ ହୋଇପାରିବ।

ଏକଥା ଶୁଣି ଶ୍ରୀଚୈତନ୍ୟ ଉଲ୍ଲସିତ ହୋଇପଡ଼ିଲେ। ନିଜର ଉତ୍କଣ୍ଠାକୁ ଆଉ ଚପାଇ ନପାରି କହିଲେ, ''ରାୟ, ଏ ରାଧା ଭାବ ପୁଣି କ'ଣ ? ମୋତେ ବୁଝାଇ କୁହ।''

ରାୟ ରାମାନନ୍ଦ ଏଥର କୌଣସି ବକ୍ତବ୍ୟ ରଖି ପାରିଲେ ନାହିଁ । ବୃନ୍ଦାବନର ବ୍ରଜବୋଲିରେ ନିଜ ଦ୍ୱାରା ଏକ କବିତା ଆବୃତ୍ତି କଲେ,

'' ନ ସୋ ରମଣ, ନ ହମ୍ ରମଣୀ<br>
ଦୁହୁ ମନ ମନୋଭାବ ପେଶାଲ ଜାନି<br>
ସଖି ହେ, ଏ ସବ୍ ପ୍ରେମ୍ କାହାନୀ,''

ଯାହାର ଭାବାର୍ଥ ହେଲା, ଶ୍ରୀରାଧା ତାଙ୍କର ପ୍ରିୟସଖୀ ଲଳିତାଙ୍କୁ କହୁଛନ୍ତି, ଗୋ ଲଳିତା, ମୋର ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଯେଉଁ ପ୍ରେମ ସମ୍ପର୍କ ଅଛି, ତାହା ପାର୍ଥିବ ନୁହେଁ। ଆମ ପ୍ରେମ ଅବ୍ୟକ୍ତ, ଅନନ୍ତ। ଭିନ୍ନ ଶରୀର ଏକ ଆତ୍ମା। ପ୍ରତ୍ୟାଶା ଶୂନ୍ୟ ଏହି ନିଷ୍କାମ ପ୍ରେମକୁ ସ୍ୱର୍ଗର ଦେବତାମାନେ ମଧ୍ୟ ଆସ୍ୱାଦନ କରିପାରି ନାହାନ୍ତି। ହିଂସା ରହିତ ଏହି ପ୍ରେମରେ ଅନନ୍ତ ସୌନ୍ଦର୍ଯ୍ୟ, ଅନନ୍ତ ମାଧୁର୍ଯ୍ୟ, ଅନନ୍ତ ଶକ୍ତି ଓ ଅନନ୍ତ ରସ ପରିପୂର୍ଣ୍ଣ। ଏଥିରେ ନାରୀପୁରୁଷର ଭେଦ ଭାବ ନାହିଁ ।

ହେ ଲଳିତା, ପ୍ରତି ମୁହୂର୍ତ୍ତରେ ଆମେ ପରସ୍ପରକୁ ପାଉଛୁ, ପୁଣି ହରାଉଛୁ। ଶ୍ରୀକୃଷ୍ଣଙ୍କ ପ୍ରତି ମୋ ଅନ୍ତରାତ୍ମାରୁ ଯେଉଁ ମହାଭାବ ସୃଷ୍ଟି ହେଉଛି, ଏହାଦ୍ୱାରା ଆମେ ପରସ୍ପର ପ୍ରତି ଏକ ନୈସର୍ଗିକ ବନ୍ଧନରେ ଆବଦ୍ଧ ହୋଇଯାଉଛୁ।

ଏପରି ମାର୍ମିକ ବକ୍ତବ୍ୟମାନ ଶୁଣି ଶ୍ରୀଚୈତନ୍ୟଙ୍କଠାରେ ଏକ ଅଲୌକିକ ଚେତନା ଉଦ୍ରେକ ହେଲା। ସେ ରାୟ ରାମାନନ୍ଦଙ୍କୁ କୁଣ୍ଢାଇ ପକାଇ କହିଥିଲେ, ''ସବ୍ ଶିଖାଲେ ମୋରେ ରାୟ ରାମାନନ୍ଦ,'' ଏବଂ ତତ୍‌କ୍ଷଣାତ୍ ମୂର୍ଚ୍ଛା ଯାଇଥିଲେ।

ଈଶ୍ୱରପ୍ରାପ୍ତି ପାଇଁ ଅନ୍ତରାତ୍ମାର ସମ୍ପୂର୍ଣ୍ଣ ସମର୍ପଣ ଚେତନା ମାନବବାଦରେ ଏକ ପରିବର୍ତ୍ତନ ଆଣିଛି। ଉତ୍କଳୀୟ ସଂସ୍କୃତିର ଏହି ଅମର କୃତି ଯୁଗପତ୍ ବିଶ୍ୱ ଧର୍ମଧାରାକୁ ପରିପୁଷ୍ଟ କରୁଥିବ, ଏଥିରେ ସନ୍ଦେହ ନାହିଁ ।

ସିଙ୍ଗୁପୁଟ, ଟମାଣ୍ଡୋ, ଖୋର୍ଦ୍ଧା

# ଭୀମ ଭୋଇଙ୍କ ଯୁଗ୍ମ ଜୀବନ: ଏକ ଦୃଷ୍ଟିପାତ

**ଡକ୍ଟର ପବିତ୍ର ମୋହନ ନାୟକ**

୧୮୭୬ ମସିହା । ମହିମା ସ୍ୱାମୀଙ୍କ ତିରୋଧାନ ପରେ ଯୋରନ୍ଦାରେ କୁମ୍ଭିପଟିଆ ଓ କନାପଟିଆଙ୍କ ମଧ୍ୟରେ ଗୋଷ୍ଠୀକନ୍ଦଳ ତୀବ୍ର ହୋଇଉଠେ । ଭୀମ ଭୋଇଙ୍କ ମଧ୍ୟସ୍ଥତା ନିଷ୍ଫଳ ହୁଏ । ବ୍ୟର୍ଥ ମନୋରଥ ଭୀମ ଭୋଇ ଫେରିଯାନ୍ତି ବିନିକା । ବିନିକାରୁ ଗୋଲଣ୍ଡା । ଗାଁ ମଝିରେ ଟୁଙ୍ଗୀଟିଏ ତୋଳାହୁଏ । ପାଖରେ ପୋଖରୀଟିଏ ଖୋଳାଯାଏ । ନାଁ ଦିଆଯାଏ ଭୀମବନ୍ଧ ।

ଟୁଙ୍ଗୀରେ ଧୂନୀ ଜଳେ । ଖଞ୍ଜଣି ବାଜେ । ଭଜନ ଲେଖାହୁଏ । ବୋଲାହୁଏ । ପାଖଆଖ ଗାଁରୁ ଭକ୍ତଙ୍କ ସୁଅ ଛୁଟେ । ଭିଡ ଜମେ । ଅଲେଖ ଶରଣ ଧ୍ୱନିରେ ଗଗନପବନ କମ୍ପିଉଠେ ।

ଠିକ୍ ଏହି ସମୟରେ ମତି (ଆଜିର କାମାକ୍ଷାନଗର)ରୁ ଭୀମ ଦାଶ ଭାଇ ନିରାକାର ଓ ଅର୍ଜୁନଙ୍କୁ ଧରି ସଦଳବଳେ ଟୁଙ୍ଗୀ ଉପରେ ଅତର୍କିତ ଚଢ଼ାଉ କରିଦିଅନ୍ତି । ଉଦ୍ଦେଶ୍ୟ: ତାଙ୍କ ଯେଉଁ ବିଧବା ଭଉଣୀ ଅନ୍ନପୂର୍ଣ୍ଣାକୁ ଭୀମ ଭୋଇ 'ଜୋରଜବରଦସ୍ତ' ତା ମାମୁଁଘର ଯୋରନ୍ଦାରୁ ଉଠାଇ ଆଣିଛନ୍ତି, ତାକୁ ଫେରାଇନେବେ । ଗଣ୍ଡଗୋଳରେ ଗୋଲଣ୍ଡା ହୁଲ୍‌ସ୍ଥୁଲ ହୁଏ । ଭକ୍ତମାନେ ଭ୍ରୁକୁଞ୍ଚନ କରନ୍ତି । କିନ୍ତୁ ଭୀମ ଭୋଇ ଯେ ସ୍ୱୟଂ କାଳିନ୍ଦୀ ଗୌନ୍ତିଆଙ୍କ ଅତିଥି । ସନ୍ନ୍ୟାସୀ । ଅନ୍ନପୂର୍ଣ୍ଣା ମାତା । ମହିମାଧର୍ମ ଦୀକ୍ଷିତା । ନିଜେ ନ ଚାହିଁଲେ ତାଙ୍କୁ କେହି ଛୁଇଁ ପାରିବେ ନାହିଁ । ଗାଁ ବାଲାଙ୍କ ପ୍ରବଳ ପ୍ରତିବାଦ ଓ ପ୍ରତିରୋଧ ଫଳରେ ଭୀମ ଦାଶ ରିକ୍ତହସ୍ତରେ ଫେରିବାକୁ ବାଧ୍ୟ ହୁଅନ୍ତି ।

ଭୀମଭୋଇ ଗୋଲଣ୍ଡା ଛାଡି ଭୁର୍ଷାପାଲି, ଶରଧାପାଲି ଦେଇ ସୋନପୁର ସହରର ଖ୍ୟାତନାମା ଆୟୁର୍ବିଦ୍ ଚତୁର୍ଭୁଜ ରାୟଗୁରୁଙ୍କ ଘରେ ଆଶ୍ରୟ ନିଅନ୍ତି । ଏଇଠି ଯୁବରାଜ ପ୍ରତାପରୁଦ୍ର ଅନ୍ନପୂର୍ଣ୍ଣାଙ୍କ ସହ ତାଙ୍କ ବିବାହ କରିଦିଅନ୍ତି । ରାଜା ନୀଳାଦ୍ରି ସିଂହ (୧୮୪୧-୯୧)ଙ୍କ ଆଦେଶରେ ଖଲିଆପାଲିର ଦୁଇଏକର ଜମି ଉପରେ ଗୌନ୍ତିଆ ଲୋଚନ ବଗର୍ତ୍ତିଙ୍କ ଦ୍ୱାରା ଆଶ୍ରମଟିଏ ତୋଳାହୁଏ । ଅନ୍ନପୂର୍ଣ୍ଣା ହୁଅନ୍ତି ଆଶ୍ରମର ଆଦିମାତା । ରଥଯାତ୍ରା, ନୂଆଖାଇ, ଦଶହରା, ଫଗୁନ୍‌ପୁନି ଦିନ ଭୀମଭୋଇ ସସ୍ତ୍ରୀକ ଗ୍ରାମ ପରିକ୍ରମା କଲାବେଳେ ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ ବସେ । ଦୀପ ଜଳେ । ଉଭୟଙ୍କ ନୀରାଜନା କରାଯାଏ । ପୁରୁଷ ସହିତ ନାରୀ ତା ସମସ୍କନ୍ଦ ମର୍ଯ୍ୟାଦା ପାଏ ସୋନପୁରର ରକ୍ଷଣଶୀଳ, ପିତୃକୈନ୍ଦ୍ରିକ ସମାଜରେ ।

ସେଆଡେ ଯୋରନ୍ଦା ଯେତେବେଳେ ବାଦବିବାଦରେ ଛନ୍ଦି ହୋଇପଡେ, ଖଲିଆ ପାଲିରେ ମହିମା ବାନା ଫରଫର ଉଡେ । ଭୀମ ଭୋଇଙ୍କ ଖ୍ୟାତି ଝାଡଖଣ୍ଡ, ଛତିଶଗଡ, ବିହାର, ଆସାମ, ବଙ୍ଗଳା, ମଧ୍ୟପ୍ରଦେଶ, ଆନ୍ଧ୍ର ପର୍ଯ୍ୟନ୍ତ ଖେପିଯାଏ । ଏପରିକି ବିବାହିତା ମହିଳାମାନେ ଘରଛାଡି ମଠରେ ମାତା ହୋଇ ରହିଯାନ୍ତି । ସ୍ୱତଃସ୍ଫୂର୍ତ୍ତ ଭାବରେ କିଛି ଲୋକ ପୁଣ୍ୟ ପାଇଁ ଭୀମ ଭୋଇଙ୍କୁ କନ୍ୟାଦାନ କରିଦିଅନ୍ତି ସ୍ୱହସ୍ତରେ, ନିଃସଙ୍କୋଚରେ ।

ପୂର୍ବରୁ ତ ଭୀମ ଭୋଇ କୌପୀନ ପିନ୍ଧି ବଲ୍କଳଧାରୀଙ୍କଠୁ ଅଲଗା ହୋଇଯାଇଥିଲେ । ଏବେ ଗୃହସ୍ଥ ଧର୍ମ ଧରିବାରୁ ଯୋରନ୍ଦାର ଦ୍ୱାର ତାଙ୍କ ପାଇଁ ସବୁଦିନ ଲାଗି ବନ୍ଦ ହୋଇଯାଏ । ଭଗବାନ ବାବା ଓ କୃପାସିନ୍ଧୁ ବାବା ଖଲିଆପାଲି ଗୋଷ୍ଠୀକୁ ବାସନ୍ଦ କରିଦିଅନ୍ତି ସିନା ବୁଝି ପାରନ୍ତିନି ମହିମାଧର୍ମର ଆଦ୍ୟ ଉଦ୍‌ଗାତା ଭୀମ ଭୋଇଙ୍କୁ ବାଦ୍‌ଦେଇ ସେମାନେ ଏଧର୍ମର କି ଅପୂରଣୀୟ କ୍ଷତିସାଧନ କଲେ ।

ଏକ ବିଧବା ବ୍ରାହ୍ମଣୀଙ୍କୁ ବାହା ହୋଇ ଭୀମ ଭୋଇ ଗୋଟିଏ ଗୁଳିରେ ଦୁଇଟି ଚଢେଇ ଶିକାର କଲେ । ଏକେ ତ ଏ ବିବାହ ଥିଲା ବିଜାତୀୟ, ତେଣୁ ବର୍ଜନୀୟ । ପୁଣି ବିଧବାବିବାହ କରି କବି ଆଉ ଏକ ନୂତନ ଦିଶା ଉନ୍ମୋଚନ କଲେ । ଆଦିମାତା ବା ଆଦି ଅନ୍ନପୂର୍ଣ୍ଣାଙ୍କ

ବ୍ୟତୀତ ଭୀମ ଭୋଇଙ୍କ ଆଉ ଚାରୋଟି ପତ୍ନୀ: ରାୟପାଲି ମୋହନ ଦାସଙ୍କ ଝିଅ ସୁମେଧା, କୁଡାସିଙ୍ଘା ନାରାୟଣ ଦାସଙ୍କ ଦୁହିତା ରୋହିଣୀ ଓ ରମ୍ଭେଲା, ଈଶ୍ୱର ସାହୁଙ୍କ କନ୍ୟା ସରସ୍ୱତୀ ଓ ସୁବର୍ଣ୍ଣା । ସୁମେଧାଙ୍କ ପୁଅ କପିଳେଶ୍ୱର ମୂକ ଓ ବଧିର । ରୋହିଣୀଙ୍କ ଝିଅ ଲାବଣ୍ୟବତୀ ସୁନ୍ଦରୀ କିନ୍ତୁ ଚିର କୁମାରୀ । ଏହାହିଁ ଥିଲା ଭୀମ ଭୋଇଙ୍କ ସଂସାର । ଏହାହିଁ ନଥିଲା ଭୀମ ଭୋଇଙ୍କ ସଂସାର ।

ମହିମାସ୍ୱାମୀ ବ୍ରହ୍ମଚାରୀ । ଭୀମ ଭୋଇ ଗୃହସ୍ଥ । ମହିମାଧର୍ମର ଆଉ ଏକ ଶାଖା ଖୋଲିଯାଏ– ଆଶ୍ରିତ । କୁମ୍ଭିପଟିଆ । କନାପଟିଆ ଓ ଗୃହସ୍ଥ ବା ଆଶ୍ରିତ । ଏ ଧର୍ମର ପରିସର ଓ ପରିଧି ବଢିଯାଏ । ଶିଷ୍ୟସଂଖ୍ୟା ବଢିଯାଏ । ଶତ୍ରୁସଂଖ୍ୟା ବି ବଢିଯାଏ । ଯା'ର ପିତାମାତା, କୁଳଶୀଳ ଠିକଣା ନାହିଁ, ସେ ପୁଣି ପରଝିଅ ବୋହୂ ଧରି ଘର କରିଛି । ବାବା ହୋଇ ବାପ ହୋଇଛି । ପାପ କରିଛି । ସଂସାରୀ ହୋଇ ସନ୍ନ୍ୟାସୀ ସାଜିଛି । ଏହାର ଉତ୍ତର ଦେଇଛନ୍ତି ଉତ୍‌କ୍ଷିପ୍ତ କବି:

ବୋଲୁଛନ୍ତି ସର୍ବେ ପରପୁତ୍ର ହୋଇ ଆପଣାର ପୁତ୍ର କଲା
ଭୁଲାଇଣ ମନ୍ତ୍ରେ ସବୁଙ୍କୁ ଶିଖାଇ ଜାତିମହତ ହିଁ ନେଲା ।
ପରଝିଅ ବୋହୂ ଭେଳିକି ଲଗାଇ ନେଇ କରିଛି ଭାରିଯା
ଗୁରୁ ବୋଲାଉଛି ଗୃହ କରିଅଛି ବୋଲୁଛନ୍ତି ରାଜାପ୍ରଜା ।
ମରକଖିଆ ଅଳପ ଆୟୁଷିଆ କୁଳବୁଡା ଯେତେ ଲୋକ
ଜନମହଳିଆ ବ୍ରହ୍ମରାକ୍ଷସିଆ ନିନ୍ଦୁଛନ୍ତି କେତେ ଦେଖ ।
ଧନଦାରାସୁତ ପାଇଣ ଆନନ୍ଦ ଏ ମୋ କପାଳରେ ଥିଲା
ପୂର୍ବକମାଣିର ଫଳ ଭୁଞ୍ଜୁଅଛି କାହାର ବା କିସ ଗଲା ।

(ସ୍ତୁତିଚିନ୍ତାମଣି, ୬୩ ବୋଲି )

ଭୀମ ଭୋଇଙ୍କ ଏ କ୍ଷୁବ୍ଧ ପ୍ରତିକ୍ରିୟାରେ କବି ବିନୋଦ ଚନ୍ଦ୍ର ନାୟକ ପ୍ରଶ୍ନ କରିଛନ୍ତି: କାହିଁ ସେ ମୁନିଜନସୁଲଭ ଧୈର୍ଯ୍ୟ ଓ ଔଦାର୍ଯ୍ୟ, କ୍ଷମାଶୀଳତା ଓ ସହିଷ୍ଣୁତା ? ସନ୍ନ୍ୟାସୀର ସମଦମ ସଂଯମ କାହିଁ ? ଏ ପ୍ରଶ୍ନର ଉତ୍ତର ଭୀମ ଭୋଇ ନିଜେ । ସେଥିଲେ ରକ୍ତମାଂସ ମଣିଷ । କ୍ଷୁଧା ତୃଷାର । ସ୍ନେହସରାଗର । ରାଗରୋଷର । ଅନୁତାପ ଅନୁଶୋଚନାର । ଏ ନୈତିକ ସ୍ଖଳନରେ, ଏ ଧର୍ମଚ୍ୟୁତିରେ କବି ପଶ୍ଚାତ୍ତାପ କରିଛନ୍ତି । ଦାୟୀ କରିଛନ୍ତି ନିଜକୁ, ନିଜ ଦୁର୍ବଳତାକୁ, ସୃଷ୍ଟିକୁ, ପୁଣି ସ୍ରଷ୍ଟାକୁ ।

ନରଦେହ ବହିବା ହେଲା ବିଅର୍ଥ । ନାରୀ ସଂଗତେ ପଡି ଅଲେଖ ହେ, ଗଲା ପୂର୍ବ ସୁକୃତ । ମହତ ସରିଲାଣି କରିବି କିସ । ମରିଯିବାର ଭଲ, ଅଲେଖ ହେ, ତେଜି ତ୍ରିପୁର ଯଶ ।

(''କାନ୍ଦି ମୁଁ ଜଣାଉଛି ଶୂନ୍ୟ ପୁରୁଷ'' ଚଉତିଶା)

ମହିମାଙ୍କୁ କାଠଗଡାରେ ଠିଆ କରିଛନ୍ତି: ନିଜ ହାତରେ ନାରୀପୁରୁଷ ଗଢି, ହେ ମୋର ସ୍ରଷ୍ଟା, ଏବେ କେଉଁ ନ୍ୟାୟରେ ବୈରାଗ୍ୟର ବାର୍ତ୍ତା ପ୍ରଚାର କରୁଛ ?

କ୍ଷୀରନୀର ଫଳମୂଳ ଆଣି ପ୍ରଭୁ ଭିଆଇ ଥୋଇଛ ଏ ଜଗତେ କ୍ଷୁଧାତୃଷା
କଲେ ନ ଖାଇବି ଯେବେ କେମନ୍ତେ ବର୍ତ୍ତିବି କହ ମୋତେ ।
ଖଞ୍ଜା କରାଇ ଯେ, କାହିଁକି ଏ ମାନ ଅରଜିଲ
ଖାଇବୁ ଯେବେ ଖରାପ ହେବୁ ବୋଲି ଫେରି ଯେବେ ସ୍ତ୍ରୀ ନାସ୍ତିକଲ ।
ଗିରିରୁ ଆଣିଲ ଗର୍ଭେସ୍ଥିତି ଦେଲ ଗଢିଲ ଆପେ ଆପଣ ବସି
ଗାତମୁହଁବାଟେ ଘିଞ୍ଚିଆଣି ମୋତେ ପଶ୍ଚାନ୍ତେ ବୋଲୁଛ ହେଲୁ ଦୋଷୀ
ଜ୍ଞାନ କରିଛ ହେ, ଚାରିଯୁଗେ ରଜବୀର୍ଯ୍ୟ ମେଳେ
ଗେରସ୍ତ ଭାରିଯା କରି ଯୋଡିଦେଇ ନାହିଁ ବୋଲୁଅଛ ଏତେବେଳେ ।
ଘଟର ଭିତରେ ଘୋଡଣୀଟି ଥୋଇ ଜୀବ ପରମକୁ ଏକ କରି
ଘାଣ୍ଟିଘୁଣ୍ଟି କରି ମାୟାରେ ପକାଇ ଏହି ପିଣ୍ଡବ୍ରହ୍ମାଣ୍ଡକୁ ଧରି ।
ଘୋଟିରହିଛ ହେ, ସ୍ୱର୍ଗମର୍ତ୍ତ୍ୟ ତିନି ତ୍ରଇଲୋକ
ଘିଞ୍ଚିଆଣି ଘୋର ବନରେ ପକାଇ ଏବେ ବୋଲୁଅଛ ଦେଖ ଦେଖ ।
ଯୋନିରେ ଜନମ କରିଛ ଜୀବକୁ ଯୁଗଳେ ମିଶାଇ ତେତେବେଳେ
ଯୁଗେ ନାହିଁ ବୋଲି ବତାଉଛ ମୋତେ ପହଁରାଇ ଆଣି ଭବଜଳେ ।
ଯମ ଦୁଆର ଯେ, ଯିବୁ ନାହିଁ ବାବୁ କଦାଚିତେ
କ୍ଷୀରନୀର ପ୍ରାୟେ ମିଶାଇ ଦେଇଣ ବିରୁଦ୍ଧ କରୁଛ ବାହ୍ୟ ମତେ ।
ଝାବଡାରେ ନିର୍ଭା କରିଛ ଶରୀର ଝିଞ୍ଜିରି ଲାଗିଛି ସର୍ବଠାରେ
ଝୁମ୍ପା ପ୍ରାୟ କରି ପଚିଶ ପ୍ରକୃତି ଲଗାଇ ଆଣିଛ ଏ ଦେହରେ
ଝାଡ ଭିତରେ ଯେ ପଶିଗଲା ବୋଲୁଅଛ ମୋତେ
ଝଞ୍ଜାକା ଭିତରେ ଝୁଙ୍କାଇ ଦେଇଣ ସେରନ୍ତା ପଣେ କହୁଛ କେତେ ।
ଟିକେ ଟିକେ କରି ମାତୃଗର୍ଭଗତୁ ଅଙ୍କୁରାଇ ଦେଇ ଟୋକାବେଳୁ
ଟେକି କଚଡାଇ ଦେଇକରି ମୋତେ ବୋଲୁଅଛ ମନ୍ଦକୃତ୍ୟ କଲୁ
ଟେକା ପରାୟେ ଯେ ବିଲର ଭିତରେ ଦେଇ ମାଡି
ଟାଡି ସୋହଡିରେ ଫିଙ୍ଗି ଦେଇକରି ବୋଲୁଅଛ ଭବେ ଗଲୁ ବୁଡି ।
ତ୍ରିଗୁଣରେ ମୋତେ ଜାତ କରିଅଛ ତିନିପୁର ମଧ୍ୟେ ଦେଇଛାଡି
ତତ୍ତ୍ୱପଦ ଗୋଟି ଗୁପତେ ଲୁଚାଇ ବୋଲୁଛ ଅମଡା ଗଲୁ ମାଡି
ସ୍ତିରୀ ସଂଗମ ଯେ ନକରିବୁ ବାବୁ କଦାଚିତେ
ତପତ ଅନଳେ ଦେହକୁ ତଇଳ କରାଉଛ ସ୍ୱାମୀ ଅନୁବ୍ରତେ ।
ନର ଦେହେ ସ୍ୱାମୀଜାତ କରିଅଛ ନବ ଖଣ୍ଡ ମେଦିନୀରେ ମୋତେ

ନାରୀପୁରୁଷଙ୍କ ସଙ୍ଗତେ ବସିଲେ ବୋଲୁଅଛ ନ ଛୁଇଁକି ତୋତେ
ନିନ୍ଦା ହେଉଛି ଯେ ଅଲେଖ ମହିମା ଧରମକୁ
ନାରୀ ପୁରୁଷରେ ବ୍ରହ୍ମାଣ୍ଡ କରିଛ ଲଜ୍ଜାକି ଲାଗୁଛି ଶ୍ରୀଛାମୁକୁ ?
ଧରିଆଣି ମୋତେ ଧରଣୀମଣ୍ଡଳେ ନରଦେହେ ସ୍ୱାମୀ ଅଛ ଥାପି
ଧରାଧରି ହୋନ୍ତେ ସ୍ନେହସଉକରେ ବୋଲୁଅଛ ହୋଇଗଲୁ ପାପୀ
ଧର୍ମ ବୁଡାଇ ଯେ କରୁଅଛୁ ମନ୍ଦ କର୍ମମାନ
ଧାରଣାଧ୍ୟାନକୁ ତୁଲିନେଇ ଯାଇ ମୋ ଉପରେ ଛିଡାଉଛ ଟାଣ ।
ପ୍ରକୃତିରେ ପିଣ୍ଡ ରଞ୍ଜନା କରିଛ ପାଣିପବନକୁ କରି ଠୁଳ
ପିତା ହୋଇକରି ପୁତ୍ରର ବେଦନା ନଜାଣୁଛ କି ଅନାଦିମୂଳ
ପାପ କରୁଛୁ ଯେ ବୋଲୁଛ ଦୁର୍ଲଭ ଦେହ ପାଇ
ପ୍ରେମ ପସରାକୁଯୋଗାଡି ମୋ ଅଙ୍ଗେ ଆଦ୍ୟରୁ ତ ଦେଇଅଛ ଥୋଇ ।
ରେତରସରେ ଶରୀର ବନାଇଛ ରାଗ ଅହଙ୍କାର ଅଙ୍ଗେ ଭରି
ରୁଧିର ମାଏଁସ ପୂରି ରହିଅଛି ସ୍ୱହସ୍ତରେ ସ୍ୱାମୀ ଦେଖ ଖାରି
ରଜତାମସ ଯେ ରମିବୁ ନାହିଁ ତୁ ସ୍ତିରୀ ଅଙ୍ଗ
ପିଣ୍ଡରେ ପରମ ପରୁଷକୁ ଥୋଇ ଜୀବକୁ କରିଦେଇଛ ସଙ୍ଗ ।
ଶୂନ୍ୟମଣ୍ଡଳରୁ ଶବଦ ବ୍ରହ୍ମରୁ ସୂତ୍ରରେ ଆଣିଛ ମୂତ୍ରଦ୍ୱାରେ
ଶୋଇବୁ ନାହିଁ ସ୍ତିରୀ ସଙ୍ଗେ ବୋଲୁଛ ଜଳିଯିବୁ ତାଙ୍କ ନିଶ୍ୱାସରେ
ସାଖାସୋଦର ହେ ବିଶ୍ୱାସ କରିଛ ନିରନ୍ତର
କୁମ୍ଭ ତଳେ କୁମ୍ଭୀ ନରକକୁ ଥୋଇ ବୋଲୁଅଛ ତାକୁ ହେତୁକର ।

(ତାଳପତ୍ର ପୋଥିରୁ)

କି ଅନୁଯୋଗ । କି ଅଭିଯୋଗ । ସ୍ରଷ୍ଟା ଆଗରେ କି ଦୁଃସାହସିକ ଯୁକ୍ତି । ଭୀମ ଭୋଇ ଗୃହସ୍ଥ ସନ୍ନ୍ୟାସୀ ହୋଇ ମହିମା ଧର୍ମରେ ଏକ ସ୍ୱତନ୍ତ୍ର ପରମ୍ପରା ସୃଷ୍ଟି କରିଥିଲେ । ପରିବାର ପରିହାର କରି ହିମାଳୟର ତୁହୀନ- ଶୀତଳ ଗିରିବର୍ତ୍ତରେ କୃଚ୍ଛ୍ରସାଧନା କରିନଥିଲେ ସେ । ଏଇଠି, ମାଟିମଟାଳ ଏ ପୃଥିବୀରେ ରହି ନିର୍ଲିପ୍ତ , ନିରାସକ୍ତ ଜୀବନ ଜୀଇଁଥିଲେ । ପଦ୍ମପତ୍ରମିବାମ୍ଭସା । ପଦ୍ମପତ୍ରରେ ପାଣି ଲାଗି ବି ଲାଗି ନଥାଏ । ସଂସାରରେ ଥାଇ ବି ନଥିଲେ ଭୀମ ଭୋଇ । ଜନକ, ଯାଜ୍ଞବଲ୍କ୍ୟ, ରାମକୃଷ୍ଣ ପୁଣି ତ ବିବାହ କରିଥିଲେ । ଯାଜ୍ଞବଲ୍କ୍ୟଙ୍କ ଦୁଇ ପତ୍ନୀ ଥିଲେ । ଜନକ ଜଙ୍ଘ ଉପରେ ସହଧର୍ମିଣୀଙ୍କୁ ବସାଇ ଯଜ୍ଞରେ ଆହୁତି ଦେଇଥିଲେ । ମେନକାଙ୍କ ପ୍ରେମପାଶରେ ପଡିବି ବିଶ୍ୱାମିତ୍ର ବ୍ରହ୍ମର୍ଷି ସ୍ତରକୁ ଉଠିଥିଲେ । ରାଜା ରାଓଙ୍କ ସାର୍ପେଣ୍ଟ ଏଣ୍ଡ ଦି ରୋପ୍ ଉପନ୍ୟାସର ଶ୍ରୀକୃଷ୍ଣ-ଦୁର୍ବାସା ଉପାଖ୍ୟାନ ଏଇଠି ମନକୁ ଆସେ ।

ଯମୁନା ବଢିଛି । ଅପର ତୀରରେ ଦୁର୍ବାସା ଅପେକ୍ଷା କରିଛନ୍ତି ରାଧାଙ୍କ ହାତପରଷା ଖାଇବେ । ଅନ୍ନବ୍ୟଞ୍ଜନ ଧରି ରାଧା ଯାଇ ଦେଖନ୍ତି ଯମୁନା ଫଁ ଫଁ କରୁଛି । ପାରିହେବେ କେମିତି ? ଶ୍ରୀକୃଷ୍ଣ କହିଛନ୍ତି । ରାଧା, ଯାଅ ଯମୁନାକୁ କହିବ କୃଷ୍ଣ ସହ ଯଦି ମୋ ଦୈହିକ ସମ୍ପର୍କ କେବେ ନାହିଁ । ବାଟ ଛାଡିଦେ । ଯମୁନା ବାଟ ଛାଡିଦେଲା । ଦୁର୍ବାସାଙ୍କୁ ଆକଣ୍ଠ ଭୋଜନ ଦେଇ ରାଧା ଫେରି ଦେଖନ୍ତି, ଯମୁନା ଦୁଇ କୂଳ ଖାଉଛି । ମହର୍ଷି କହିଛନ୍ତି । ରାଧା, ଯମୁନାକୁ କୁହ, ଦୁର୍ବାସା ଆଜି ଯଦି କିଛି ଖାଇନାହାନ୍ତି, ଛିଡିଯା । ଯମୁନା ଛିଡିଯାଇଛି ।

ଭୀମ ଭୋଇ ସଂସାରୀ ଥିଲେ । ସଂସାରୀ ନଥିଲେ । ଦେହରୁ ଦେହାତୀତକୁ, ଇନ୍ଦ୍ରିୟ ବିଳାସରୁ ଅତୀନ୍ଦ୍ରିୟକୁ ତାଙ୍କ ଆତ୍ମା ସଂଚରଣ କରୁଥିଲା । ଏହା ହିଁ ଥିଲା ତାଙ୍କ ଜୀବନ । ଏହା ହିଁ ଥିଲା ତାଙ୍କ ଦର୍ଶନ । ସଂସାରରେ ଥାଇ ବି ସେ ଥିଲେ ସନ୍ନ୍ୟାସୀ । ତାଙ୍କୁ ବୁଝିବାକୁ ହେଲେ ସେହି ସ୍ତରକୁ ଯିବାକୁ ପଡିବ । ନହେଲେ ଖାଲି ଯେ ଚିନ୍ତାବିଭ୍ରାଟ ହେବ ତା ସହ ଏତେବଡ ସିଦ୍ଧଯୋଗୀଙ୍କୁ ଭୁଲ୍ ବୁଝି ନିଜ ବଡିମାରେ ଆତ୍ମତୃପ୍ତି ଲାଭ କରିବାହିଁ ସାର ହେବ । ଦିଲ୍ଲୀ ମନୋହର ପବ୍ଲିଶର୍ ବହିଟିଏ ବାହାର କରିଛି ୨୦୦୮ ମସିହାରେ । ପପୁଲାର୍ ରିଲିଜିଅନ୍ ଏଣ୍ଡ ଏସେଟିକ୍ ପ୍ରେକ୍ଟିସେସ୍ । ସେଥିରେ ଜୋହାନେସ୍ ବେଲ୍‌ଜ୍‌ଙ୍କ ଏସେଟିକ୍, ଲେମେନ୍ ଅର ରିବେଲିଆସ୍ ଗୁରୁ ? ଭୀମ ଭୋଇ ଏଣ୍ଡ ହିଜ୍ ଫିମେଲ୍ କନ୍‌ସଟ୍‌ଲ'' ଶୀର୍ଷକ ନିବନ୍ଧଟିଏ ସ୍ଥାନିତ । ଲେଖାଟିରେ ମେଦିନୀ ଦୃଷ୍ଟିର ଅଭାବ, ଯେଉଁ ଦୃଷ୍ଟିରେ ଭୀମ ଭୋଇ ବି.ସି.ମଜୁମ୍‌ଦାରଙ୍କୁ ଏକ ପ୍ରଜ୍ଞାପୁରୁଷ ଭଳି ପ୍ରତିଭାତ ହୋଇଥିଲେ । ଆର୍ତ୍ତ ବଲ୍ଲଭଙ୍କୁ 'ମହାନ୍' ଦିଶିଥିଲେ । ବଡ ଲୋକଙ୍କୁ ହଠାତ୍ ଛୋଟ କରିଦେଲେ ଚର୍ଚ୍ଚାର ପରିସରକୁ ଆସିବା ସହଜ । ତେଣୁ ଯୀଶୁ, ଗାନ୍ଧୀ, ଅରବିନ୍ଦଙ୍କ ଭଳି ମହାପୁରୁଷଙ୍କୁ ବିବାଦ ଘେରକୁ ଟାଣିଅଣାଯାଉଛି । କିନ୍ତୁ ସମସ୍ତେ ତ ଲିଟନ୍ ଷ୍ଟ୍ରେଚି ବା ସଲ୍‌ମାନ୍ ରସ୍‌ଦି ନୁହନ୍ତି । ଛୋଟ ମଣିଷର ଆଖି ଛୋଟ । ସେ ଆଖିରେ, ସେ କ୍ରେକ୍‌ଡ୍ ଲେନ୍‌ସ୍'ରେ ବଡ ମଣିଙ୍କୁ ଦେଖିଲେ 'hearsay';heresy' ହୋଇଯିବା ସମ୍ଭାବନା ଅଧିକ । ଅବଶ୍ୟ ହିନ୍ଦୁଧର୍ମ ହେଉ ଅଥବା ମହିମାଧର୍ମ ହେଉ ଏଥିରେ ଫତୁଆ ନାହିଁ । ତେଣୁ ନିରାପଦ ।

ଥରେ ଦେଓ୍ୱାନ୍ ବନମାଳି ମିଶ୍ର ଅଚାନକ ଖଲିଆପାଲି ଆଶ୍ରମକୁ ପଶିଆସିଲେ । କବି ଖଞ୍ଜଣି ଧରି ଭଜନ ବୋଲୁଥିଲେ । ଲେଖନକାର ଲେଖିଚାଲିଥିଲେ । ଏପରି ଏକ ଶାନ୍ତ, ସ୍ନିଗ୍ଧ, ସାରସ୍ୱତ ପ୍ରାଭାତିକ ମୁହୂର୍ତ୍ତରେ ଦେଓ୍ୱାନ୍ ଜୋତା ପିନ୍ଧି ବେଦୀ ଉପରକୁ ଉଠିଗଲେ । ଆଖିରେ ନିଆଁ ହୃଦୟରେ ଅହଂକାର । ସ୍ୱରରେ ତାଚ୍ଛଲ୍ୟ । କହିଲେ, ‘‘ଭଣ୍ଡବାବା, ଠକି ଭଣ୍ଡି ମାତା ଧରି ମଠରେ ରହୁଛୁ । ଚାଲ୍, ଧର୍ମ ପରୀକ୍ଷା ଦେବୁ ! ଅଗ୍ନିପରୀକ୍ଷା, ବୁଝିଲୁ ? ଉଠ୍ !’’ ଭୀମ ଭୋଇ ଉଠିପଡିଲେ । ଶିଷ୍ୟମାନେ ବାଧାଦେଲେ– ସୀତାରାମ, ପରଶୁରାମ, ଡମରୁ, ଚମରୁ, ମୋହନ ଦାସ, ହରି ପଣ୍ଡା ଓ ବସୁ ପଣ୍ଡା । ଏତେ ଶିଷ୍ୟ ଥାଉଁ ଥାଉଁ ଗୁରୁ ଦେବେ ଅଗ୍ନିପରୀକ୍ଷା ? ଅସମ୍ଭବ । ଧର୍ମପରୀକ୍ଷା ଶିଷ୍ୟମାନେ ନିଜେ ଦେବେ ନିଆଁରେ । ଚାଲିଲେ ଦେଓ୍ୱାନ୍‌ଙ୍କ ପଛେ ପଛେ । ଭୀମ ଭୋଇଙ୍କ ଖଞ୍ଜଣି ବାଜି ଉଠିଲା । ପାହାଡ ପ୍ରତିଧ୍ୱନି ତୋଳିଲା । ଅଙ୍ଗନଦୀର ଚାର୍ମି ଚଳଚଞ୍ଚଳ ହେଲା । କାନ୍ଦି କାନ୍ଦି ଭୀମ ଭୋଇ ମହିମାଙ୍କୁ ଡାକିଲେ, ମହିମା, ଧର୍ମ ଉଜୁଡିଯାଉଛି । ତୁମ ଧର୍ମ, ତୁମେ ସମ୍ଭାଳ ।

ତେଣେ ସୋନପୁରରେ ଯୁବରାଜ ପ୍ରତାପରୁଦ୍ର ପ୍ରତିବାଦ କଲେ: ‘‘ମହାରାଜ, ବାବାଜୀଙ୍କୁ ପୋଡିମାରିବା ଅନ୍ୟାୟ, ଅଧର୍ମ । କ’ଣ ଭୁଲ୍ କଲେ ସେମାନେ ? କାହାର କ୍ଷତି କଲେ କି ଦୋଷ କଲେ ଯେ ମୃତ୍ୟୁଦଣ୍ଡ ପାଇବେ ? ଏଥିରୁ କ୍ଷାନ୍ତ ହୁଅନ୍ତୁ । ମହାରାଜ ! ବିପତ୍ତିକୁ ଆମନ୍ତ୍ରଣ କରନ୍ତୁ ନାହିଁ । ‘ନୀଳାଦ୍ରି ସିଂହଙ୍କ ସଦ୍‌ବୁଦ୍ଧି ଉଦୟ ହେଲା । ବ୍ରାହ୍ମଣ ସଭାରେ ବହୁ ଯୁକ୍ତିତର୍କ ପରେ ଅଗ୍ନିପରୀକ୍ଷା ଏକ ସପ୍ତାହ ଟାଳି ଦିଆଗଲା । ଶେଷରେ ରାଜା ୧୮୯୧ ମସିହା ଅଗଷ୍ଟ ୨୩ ତାରିଖ ଦିନ ଏକ ଅଜଣା ରୋଗରେ ଚାଲିଗଲେ ।

ପ୍ଲଟ୍ ନଂ–୨୨, ମହନି କମ୍ପ୍ଲେକ୍ସ ସାମ୍ନା
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର–୧୬






କୋଲକାତାଠାରେ ସୂଚନା ଓ ଲୋକସମ୍ପର୍କ ବିଭାଗ ଓ ଉତ୍କଳୀୟ ମିଳିତ ମଞ୍ଚ ଆନୁକୂଲ୍ୟରେ ଆୟୋଜିତ ଓଡ଼ିଶା ଦିବସ ପାଳନ ସମାରୋହରେ ରାଜ୍ୟ ଯୋଜନା ବୋର୍ଡ ଉପାଧ୍ୟକ୍ଷ ଶ୍ରୀ ସୁରେନ୍ଦ୍ର ନାଥ ନାୟକ କୃତୀ ଛାତ୍ରଛାତ୍ରୀମାନଙ୍କ ଗହଣରେ ଉପସ୍ଥିତ ଅଛନ୍ତି ।

# ଭୀମଭୋଇଙ୍କ ଦିବ୍ୟବାଣୀ

ଗୋରେଖନାଥ ସାହୁ

ଭୀମଭୋଇ ଆପଣାର କାଳଜୟୀ ରଚନାବଳୀ ମାଧ୍ୟମରେ ମାନବ ସମାଜକୁ କେତେକ ଦିବ୍ୟବାଣୀ ଦେଇ ଯାଇଛନ୍ତି । ସେହି ଦିବ୍ୟବାଣୀ ମଧ୍ୟରେ ବାରମ୍ବାର ଉଦ୍‌ଘୋଷ ହୋଇଛି ଗୁରୁ-ଶିଷ୍ୟ ସମ୍ପର୍କ ଏବଂ ସ୍ୱାମୀ ଓ ସ୍ତ୍ରୀ ସମ୍ପର୍କ । ଭୀମ ଭୋଇ ନିଜ ଗୁରୁଙ୍କୁ ସାକ୍ଷାତ୍ ପରଂବ୍ରହ୍ମ ସଦୃଶ ଜ୍ଞାନ କରି ସେହିପରି ତାଙ୍କୁ ସମ୍ମାନ ଦେଉଥିଲେ ।

ଗୁରୁର୍ବ୍ରହ୍ମା ଗୁରୁ ର୍ବିଷ୍ଣୁଃ ଗୁରୁର୍ଦେବ ମହେଶ୍ୱରଃ
ଗୁରୁଃ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈଶ୍ରୀ ଗୁରବେ ନମଃ ।

ଗୁରୁ (ମହିମା ଗୋସାଇଁ) ଯାହାଙ୍କୁ ସେ ସାକ୍ଷାତ୍ ଶଙ୍ଖ ଚକ୍ରଧାରୀ ରୂପେ ଦର୍ଶନ କରିଥିଲେ, ତାଙ୍କୁ ଅଯୋନି ସମ୍ଭୂତ ଓ ତିନି ଭୁବନର ହର୍ତ୍ତାକର୍ତ୍ତା ବିଧାତା ବୋଲି ମନେ କରୁଥିଲେ । ଗୁରୁ ହେଉଛି ଆଧ୍ୟାତ୍ମିକ ଜଗତରେ ମୁକ୍ତିର ମାର୍ଗ ବତାଇ ଶିଷ୍ୟକୁ ତିଆରି ଦେଉଥିବା ଧର୍ମପୁରୁଷ । ସେ ହେଉଛନ୍ତି ଶିଷ୍ୟ (ଭକ୍ତ) ଓ ଭଗବାନଙ୍କ ମଧ୍ୟରେ ଯୋଗସୂତ୍ର । ଭକ୍ତ, ଗୁରୁ ଓ ଭଗବାନ ହେଉଛନ୍ତି ଗୋଟିଏ ସରଳ ରେଖାର ତିନୋଟି ବିନ୍ଦୁ । ଭକ୍ତ ଭୀମଭୋଇ ଗୁରୁ ଓ ଭଗବାନଙ୍କ ମଧ୍ୟରେ ମୋଟେ ପାର୍ଥକ୍ୟ ଦେଖି ନାହାନ୍ତି । ଗୁରୁ ବନ୍ଦନା କରିବାକୁ ଯାଇ ସେ ଗାଇଛନ୍ତି:

''ଗୁରୁ ସେବାଧର୍ମ ଚାରିଯୁଗେ ରହେ କ୍ଷୟବୃଦ୍ଧି କେବେ ନୁହେଁ ।
ସେବା ମଧ୍ୟରେ ପ୍ରଧାନ ଅଟେ ସେହୁ ଶତେ ପୁରୁଷର ଯାଏ ।୫।
ଗୁରୁସେବା ଫଳ ଶତେକ ପୁରୁଷ ଖାଇ ବୋହିଲେ ନସରେ ।
ଗୁରୁ ଭକତିରେ ଅପାର ମହିମା ଅଶେଷ ଦୁରିତ ହରେ।୬।
(ସପ୍ତପଞ୍ଚଶତ ବୋଲି, ସ୍ତୁତିଚିନ୍ତାମଣି)

ଭୀମଭୋଇ ନିଜେ ରଚନାବଳୀରେ ଗୁରୁ ଶିଷ୍ୟ ସମ୍ପର୍କକୁ ଏତେ ମହତ୍ତ୍ୱ ଦେବାର ଯଥେଷ୍ଟ ବୈଜ୍ଞାନିକ କାରଣ ଅଛି । ଆଧ୍ୟାତ୍ମିକ କ୍ଷେତ୍ରରେ ଈଶ୍ୱର ପ୍ରାପ୍ତିର ଏକମାତ୍ର ବାଟ ହେଉଛି ସଦ୍‌ଗୁରୁର ସେବା କରିବା । ସେଥିପାଇଁ ଭୀମଭୋଇ ମୋକ୍ଷ ଲାଭ ପାଇଁ ସଦ୍‌ଗୁରୁ ସେବାରେ ମନପ୍ରାଣ ଢାଳି ଦେଇଛନ୍ତି । ସନାତନ ଧର୍ମରେ ଗୁରୁ ପରମ୍ପରା ପ୍ରତି ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରାଯାଇଛି । ଶାସ୍ତ୍ର ପୁରାଣରେ ଗୁରୁଭକ୍ତିର ଭୁରି ଭୁରି ପ୍ରମାଣ ଦିଆଯାଇଛି । ମହାଭାରତରେ ଏକଲବ୍ୟର ଗୁରୁଭକ୍ତି ତାହାକୁ ଚିରଦିନ ଅଜର ଅମର କରି ରଖିଛି । ଗୁରୁର ପିତୁଳା ମଧ୍ୟ ଶିଷ୍ୟକୁ ସାଧନା ପଥରେ ସିଦ୍ଧି ପ୍ରଦାନ କରିପାରେ । ତାହାର ଏକ ଜ୍ୱଳନ୍ତ ଉଦାହରଣ ଏକଲବ୍ୟ ଓ ଦ୍ରୋଣ ଉପାଖ୍ୟାନ । ଗୁରୁ ହେଉଛି ସେହି ପୁରୁଷ ଯେ ଶିଷ୍ୟକୁ ଅଜ୍ଞାନରୁ ଜ୍ଞାନକୁ, ଅନ୍ଧକାରରୁ ଆଲୋକକୁ ଓ ମୃତ୍ୟୁରୁ ଅମୃତତ୍ତ୍ୱ ଆଡକୁ ନେଇଯାଏ ।

ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକୟା
ଚକ୍ଷୁରୁନ୍ମିଳିତଂ ଯେନ ତସ୍ମୈଶ୍ରୀ ଗୁରବେ ନମଃ ।

ଗୁରୁ ସଂସାର ରୂପକ ଭବସାଗରରୁ ପାରିକରି ଲକ୍ଷ୍ୟ (ମୋକ୍ଷ)ପଥରେ ପହଞ୍ଚାଇ ଦେବା ନାବିକ । ସଂସାରରେ ସମସ୍ତଙ୍କୁ ସଦ୍‌ଗୁରୁ ପ୍ରାପ୍ତ ହୁଅନ୍ତିନାହିଁ। ପୂର୍ବ ଜନ୍ମ (ପ୍ରାରବ୍ଧ) ଓ ଇହ ଜନ୍ମର ସୁକୃତିରୁ ସଦ୍‌ଗୁରୁ ପ୍ରାପ୍ତ ହୁଅନ୍ତି। ଏବେ ଆଧୁନିକ ସମାଜରେ ଭଣ୍ଡ ଗୁରୁମାନଙ୍କ ସଂଖ୍ୟା ଖୁବ୍ ବେଶୀ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଭୋଗ ବିଳାସରେ ମାତିଥାନ୍ତି। ତେଣୁ ସଦା ସର୍ବଦା ସେମାନେ ସଂଗ୍ରହରେ ବ୍ୟସ୍ତ ଥାଆନ୍ତି । ଭୌତିକ ଧନ ସମ୍ପତ୍ତି ସଂଗ୍ରହ ପାଇଁ ସେମାନେ ସବୁବେଳେ ନାନା ଯୋଜନା ଫାନ୍ଦିବାରେ ମନବଳାଇ ଥାନ୍ତି । ସେମାନଙ୍କ ଭଣ୍ଡାମୀ ଦିନେନା ଦିନେ ଲୋକଲୋଚନକୁ ଆସେ ଏବଂ ସେମାନେ ସବୁକାଳ ପାଇଁ ନିନ୍ଦିତ ହୁଅନ୍ତି । ସେମାନଙ୍କ ମଧ୍ୟରୁ କେତେକ ଅଲୌକିକ ଶକ୍ତି ପ୍ରଦର୍ଶନ କରି ନିଜର ଆଧ୍ୟାତ୍ମିକ ଗୁଣକୁ ନ୍ୟୂନ କରି ଦିଅନ୍ତି । ଦିନକର କଥା ଜଣେ ସାଧୁ ପରମହଂସ

ରାମକୃଷ୍ଣଙ୍କ ସମ୍ମୁଖରେ ଗଙ୍ଗାନଦୀ ଉପରେ ପାଣିରେ ଏ କୂଳରୁ ସେ କୂଳକୁ ଚାଲିଗଲେ । ତାହା ଦେଖି ରାମକୃଷ୍ଣ କହିଲେ ଯେ ସେ ସାଧୁର ଏତେ କଷ୍ଟକର ସାଧନା ନିମିଷକେ ଧ୍ୱଂସ ହୋଇଗଲା । ନିଜ ଆଧାତ୍ମିକ ଶକ୍ତିର ଅପଚୟ ଏତେ ଛୋଟ କାମ ପାଇଁ ସେ କଲେ ଯାହା ସେ ଦିଅଣା ପଇସା ଦେଇ ଡଙ୍ଗାରେ ପାରି ହୋଇ ଅପରପାର୍ଶ୍ୱକୁ ଯାଇ ପାରିଥାନ୍ତେ । ଭଗବାନ ସ୍ୱୟଂ ଶକ୍ତି ସ୍ୱରୂପ । ସେ ସକଳ ଶକ୍ତିର ଆଧାର । ତେଣୁ ଶକ୍ତିର ସର୍ବଦା ସଂଚୟ ହେବା ଉଚିତ୍ ଏବଂ ଶକ୍ତିର ଅପଚୟ ସର୍ବଦା ବର୍ଜନୀୟ । ମାତ୍ର କାମକୁ ଜାଣି ଶକ୍ତିର ଯଥାର୍ଥ ଉପଯୋଗ ହେବା ବିଧେୟ । ଭଗବାନ ସକଳ ଶକ୍ତିର ଉତ୍ସ । ସେ ସର୍ବ ଶକ୍ତିମାନ୍, ସର୍ବଜ୍ଞ ଓ ସର୍ବବ୍ୟାପୀ ବୋଲି ସାଧକର ଉପଲବ୍ଧି ହେଲେ ଭଗବାନଙ୍କ ସହ ତା'ର ସମ୍ବନ୍ଧ ଯୋଡି ହୋଇଯାଏ ।

ଭୀମଭୋଇ ସ୍ୱାମୀ ସ୍ତ୍ରୀର ସମ୍ପର୍କକୁ ଏତେ ପ୍ରାଧାନ୍ୟ ଦେଇ ସେ ସମ୍ପର୍କରେ ବାରମ୍ବାର ଅବତାରଣା କରିବାର ତାତ୍ପର୍ଯ୍ୟ କ'ଣ ? ଏ ସମ୍ପର୍କରେ ଅନୁଧ୍ୟାନ କଲେ ଜଣାଯାଏ ଯେ ସ୍ୱାମୀ ସ୍ତ୍ରୀ ସମ୍ପର୍କ ହେଉଛି ଏକ ସାଂସାରିକ ବନ୍ଧନ । ଜଣେ ମଲାପରେ ଆଉ ଜଣେ ସଙ୍ଗରେ ସ୍ୱର୍ଗକୁ ଯାଏ ନାହିଁ । ମନୁଷ୍ୟ ଏକୁଟିଆ ଆସିଛି ଓ ଗଲାବେଳେ ମଧ୍ୟ ଏକୁଟିଆ ଯିବ, ଏହା ଧ୍ରୁବ ସତ୍ୟ । ତେବେ ସ୍ୱାମୀ ସ୍ତ୍ରୀ ସମ୍ପର୍କ ଏପରି ଏକ ବନ୍ଧନ ଯାହା ବିଭୁ ପଦରୁ ଜଣେ ସାଧକକୁ ଅଲଗା କରେ । ପ୍ରଭୁଙ୍କ ସହିତ ସାଧକର ଏକାତ୍ମଭାବ ସୃଷ୍ଟି ହୋଇ ପାରେନା । ସ୍ୱାମୀ ସ୍ତ୍ରୀ ସମ୍ପର୍କରୁ ଜାତ ସଂସାର ଜଞ୍ଜାଳ ତାକୁ ଏମିତି ମାଡି ବସେ ସେ ଈଶ୍ୱରଙ୍କ ନାମ ସ୍ମରଣ କଥା ମଧ୍ୟ ଭୁଲିଯାଏ । ରମଣ ମହର୍ଷିଙ୍କ ଶିଷ୍ୟ ସାଧୁ ପଲ ବ୍ରଣ୍ଟନ୍ ଏକଥା କହିଲେ ଯେ– ''ଆମେ ଭଗବାନଙ୍କୁ ସ୍ମରଣ ବ୍ୟତୀତ ଆଉ ଅଧିକ କ'ଣ କରିପାରିବା ?'' ଏ କଥାରେ ହୁଏତ ସତ୍ୟତା ଅଛି । ମାତ୍ର ସମ୍ପୂର୍ଣ୍ଣ ସତ୍ୟତା ନାହିଁ କାରଣ ନବଧା ଭକ୍ତିମତେ ଶ୍ରବଣ, କୀର୍ତ୍ତନ, ସ୍ମରଣ, କୀର୍ତ୍ତନ, ସ୍ମରଣ, ପାଦସେବା, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ ମାଧ୍ୟମରେ ପରମାତ୍ମା ଭଗବାନଙ୍କୁ ପ୍ରାପ୍ତ କରାଯାଇପାରେ । ଶରଣାଗତ ଭକ୍ତକୁ ସ୍ୱୟଂ ଭଗବାନ ମନେ ପକାନ୍ତି । ସେ ତା'ର ସମସ୍ତ ଯତ୍ନ ନିଅନ୍ତି ଠିକ୍ ଯେପରି ମା ବିଲେଇ ନିଜଛୁଆକୁ ତୁଣ୍ଡରେ ଧରି ଏଠାବରୁ ନିଆଅଣା କରେ । ବିଲେଇ ଛୁଆର ସେଠାରେ କିଛି କର୍ତ୍ତୃତ୍ୱ ନଥାଏ । ଠିକ୍ ସେହିପରି ଶରଣାଗତ ଭକ୍ତ ଭଗବାନଙ୍କ ସାହା ଭରସାରେ ଚଳେ । ତେଣୁ ସେହି ଭରସାରେ ଭୀମଭୋଇ ଗାଇଛନ୍ତି:–

''ଅଭୟ ବ୍ରହ୍ମକୁ ଆଶ୍ରେ କଲେ ପରା ନଥାଇ ମନରେ ଭୟ ।
ଚିରାନନ୍ଦ ଯେବେ କରୁଣା କରନ୍ତି ଚିରକାଳ ରହେ ଦେହ।୩।

**XXXXXXX**

ଅଭୟ ପାଦପଦ୍ମକୁ ଆଶ୍ରାକଲେ ନାହିଁ ପରା ଜନ୍ମ ମୃତ୍ୟୁ ।
ପିଣ୍ଡ ନପଡଇ ଶ୍ରୋତା ନବୁଡଇ ଚାରିଯୁଗେ ରହେ ହେତୁ।୫।
(ସ୍ତୁତିଚିନ୍ତାମଣି ଏକଷଷ୍ଠୀ ବୋଲି)

ଯେଉଁ ଲୋକ ପ୍ରଭୁ ନାମ ସ୍ମରଣ ଶୁଦ୍ଧା ବିସ୍ମରଣ ହୁଏ ସେଭଳି ଲୋକ ନବଧା ଭକ୍ତିର କେଉଁ ଭାବକୁବା ଆଶ୍ରୟ କରିବ ? ଶରଣାଗତ ଭକ୍ତକୁ ଭଗବାନଙ୍କ ବ୍ୟତୀତ ଆଉ କିଛି ଦେଖାଯାଏ ନାହିଁ । ସଦା ସର୍ବଦା ସେ ଭଗବାନଙ୍କୁ ହିଁ କେବଳ ଦେଖୁଥାଏ । ସର୍ବବ୍ୟାପୀ ଭଗବାନ ସର୍ବତ୍ର ତାକୁ ଦୃଷ୍ଟିଗୋଚର ହୁଅନ୍ତି। ପାର୍ଥିବ ସଂସାର ଜଂଜାଳରେ ତାର ମନ ନଥାଏ । ତଥାପି ଯେ ଗୃହୀ ତାର ମଧ୍ୟ ଭକ୍ତି କରିବାର ଅଧିକାର ଅଛି । ସଂସାର ମଧ୍ୟରେ ପଦ୍ମ ପତ୍ରରେ ପାଣି ସଦୃଶ ତାହାକୁ ରହିବାକୁ ହୁଏ । ଗୃହୀ ହେଲେ ମଧ୍ୟ ଅନାସକ୍ତ ତାର ଜୀବନ, ଯେଉଁ ଅନାସକ୍ତ ଭାବର ଜ୍ଞାନ ଗୀତା ମାନବ ସମାଜକୁ ପ୍ରଦାନ କରେ । ଗୀତାରେ ମଧ୍ୟ ଯୋଗେଶ୍ୱର କୃଷ୍ଣ ସଂସାର ଭିତରେ ଥିଲେ ମଧ୍ୟ ଅର୍ଜୁନଙ୍କୁ ଜଣେ ଯୋଗୀ ହୋଇଯିବା ପାଇଁ ପରାମର୍ଶ ଦେଇଥିଲେ । ସଂସାର ଭିତରେ ଥିଲେ ଜଣେ ଗୃହସ୍ଥକୁ ତା'ର ଧର୍ମ ପାଳନ କରିବାକୁ ହୋଇଥାଏ ଏବଂ ଗୃହସ୍ଥର ଧର୍ମ କିପରି ପାଳନ କରିବା ଉଚିତ୍ ସେ କଥା ଭୀମଭୋଇ ନିଜ ଜୀବନରେ ପାଳନ କରି ସମଗ୍ର ଜଗତ ଭଗତଙ୍କୁ ସେପରି କରିବାକୁ ପରାମର୍ଶ ଦେଇଛନ୍ତି ।

''ମହିମା ଭଜିଲେ ପର ପୁରୁଷଙ୍କୁ ବୋଲିବ ଏ ମୋର ବାପ ।
ଗୁରୁ ପ୍ରସନ୍ନେ ସେ ଜଳ ଫଳ ପାଇ ତପସ୍ୟା ଠାରୁ ଅଧିକ।''୯।
ମହିମା ଭଜିଲେ ପର ଯୁବତୀକି ବୋଲିବ ଏ ମୋର ମାତା ।
ମାତା ବୋଲନ୍ତେ ମୋହ ମାୟା ନଲାଗେ ଆପେ ଛଡାନ୍ତି କରତା।୧୦।
ମହିମା ଭଜିଲେ ସ୍ତିରୀ ସଙ୍ଗମକୁ ନ କଳ୍ପିବ କଦାଚିତେ ।
ଆପଣା ଭାରିଯା ହେଲେ କିସ ହେଲା ବିଚାରିବ ଅନ୍ତର୍ଗତେ ।୧୨।
ଯେତେ ହେଲେ ସେହି କୁମ୍ଭୀ ନର୍କକୁଣ୍ଡ ବୁଡିଲେ ସକଳ ଗଲା ।
ଚାରିଯୁଗେ ଜୀବ ପଡି ପଡି ତହିଁ ନିଜ ହେତୁ ପାଶୋରିଲା ।୧୩।
ମହିମାକୁ ଭଜି ଯୋନି ଶକତିକୁ ଛାଡି ନପାରଇ ଯେହୁ ।
ଗିଳି ପକାଉଛି ଆଚ୍ଛାଦି ହେଉଛି ଚେତା ଥାଉଁ ମଲା ସେହୁ ।୧୪।''
(ସ୍ତୁ.ଚି.ତେୟାନବେ ବୋଲି)

ଗୋଟିଏ ପଟରେ ସ୍ତ୍ରୀ ସଙ୍ଗ ସମ୍ପୂର୍ଣ୍ଣ ନିବାରଣ କରିବା ସକାଶେ ଭୀମଭୋଇ ମାନବ ସମାଜକୁ ପରାମର୍ଶ ଦେଲା ବେଳେ ସେଭଳି ସଂସର୍ଗ ମୋକ୍ଷ ପ୍ରାପ୍ତିର ବାଧକ ବୋଲି ଘୋଷଣା କରୁଛନ୍ତି। ଏ କଥାର ଅବତାରଣା ଅନେକ ଶାସ୍ତ୍ର ପୁରାଣରେ କରାଯାଇଛି । ଭଗବାନଙ୍କ ସାନ୍ନିଧ୍ୟ ଲାଭ କରିବା ସକାଶେ ଯୌନ ସମ୍ପର୍କକୁ ଏକ ହିଂସା ଓ କୁତ୍ସିତ କ୍ରିୟାର ଆଖ୍ୟା ଦେଇ ଜ୍ଞାନୀ ଲୋକ ସଂସାର ତ୍ୟାଗ କରି ସନ୍ନ୍ୟାସୀ ହୋଇଯାଆନ୍ତି । ପ୍ରଶ୍ନ ଉଠେ ତେବେ ସତରେ କ'ଣ ଗୃହସ୍ଥମାନଙ୍କ ପାଇଁ ଧର୍ମ ଆଚରଣ କରି ମୁକ୍ତିଲାଭ କରିବାର ବାଟ ନାହିଁ ? ନିଜେ ଭୀମଭୋଇ ମହିମା ଧର୍ମ ଦୀକ୍ଷା ନେଇ ପୁଣି କିପରି ଗୃହସ୍ଥ ହେଲେ ? ତେବେ ତାଙ୍କ ପାଇଁ କ'ଣ ମୁକ୍ତିର ବାଟ ବନ୍ଦ ହୋଇଗଲା ? ନୁହେଁ ! ଗୃହସ୍ଥମାନଙ୍କ ମୁକ୍ତି ସକାଶେ ନିଜେ ଭୀମଭୋଇ ବାଟ ବତାଇ ଦେଇଛନ୍ତି । ଜଣେ ଅନୁସନ୍ଧିତ୍ସୁର ମନନେଇ ବିଶ୍ଳେଷଣ କଲେ ଜଣାପଡେ ଯେ କେତେ ଗଭୀର ତାଙ୍କର ଜ୍ଞାନ, ଆତ୍ମା ପରମାତ୍ମାର ସମ୍ପର୍କ ନେଇ । କେତେ ସାଧନା ଓ ସିଦ୍ଧିର ସେ ଥିଲେ ଆଧାର । ଏ ଭଳି ଜ୍ଞାନ ଗାରିମା କେବଳ ତାଙ୍କ ଭଳି ଜଣେ ପରମ ଯୋଗୀପକ୍ଷେ ସମ୍ଭବ । ତା'ପୂର୍ବରୁ ଭୀମଭୋଇ ଲେଖୁଛନ୍ତି–

ଏ କଳି ଯୁଗରେ ଗୃହ କରିବାକୁ ଲେଖୁ ନାହିଁ ଚାରିବେଦ ।
କଳିଯୁଗ ସ୍ତିରୀମାନଙ୍କୁ ଛୁଇଁଲେ ଆୟୁ ଥାଉଁ ଥାଉଁ ବଧ ।୧୬।

(ସ୍ତୁତିଚିନ୍ତାମଣି ଚଉରାନବେ ବୋଲି)

ପୁଣି କହୁଛନ୍ତି–

ପତି ସେବାକଲେ ସତୀପଣ ପାଇ ଗତିକି ଲଭଇ ସେହି ।
ପିଣ୍ଡପ୍ରାଣ ଜାନୁ ଯଉବନ ଦେଇ ପତିକି ଭୋଗ୍ୟ କରାଇ ।୩।

(ସ୍ତୁତିଚିନ୍ତାମଣି ଚଉରାନବେ ବୋଲି)

ମନୋବୈଜ୍ଞାନିକମାନଙ୍କ ମତରେ ଏକବିଂଶ ଶତାବ୍ଦୀ ହେବ ଯୌନପ୍ରଧାନ ଏକ ସମୟ । ଏହି ଶତାବ୍ଦୀରେ ଯୌନ ଉଚ୍ଛୃଙ୍ଖଳତା ଅଧିକମାତ୍ରାରେ ଦେଖାଦେବ । ଏତଦ୍ୱାରା ଯୌନ ରୋଗର ପ୍ରାଦୁର୍ଭାବ ମଧ୍ୟ ବଢିବ । ତାହାର ପ୍ରମାଣ ସ୍ୱରୂପ ଏଚ୍.ଆଇ.ଭି, ଏଡ୍ସ୍, ସୁନାମୀ ଭଳି ମାଡି ଆସୁଛି ସତେ ଯେପରି ଏହା ସମଗ୍ର ମାନବ ସମାଜକୁ ମାରାତ୍ମକଭାବେ ରୋଗଗ୍ରସ୍ତ କରି ଧରାପୃଷ୍ଠରୁ ନିଶ୍ଚିହ୍ନ କରିଦେବ ! ସେଭଳି କାମନା ବାସନାର ଅନ୍ତକରି ମାନବ ସମାଜକୁ କଳିଯୁଗର ଭ୍ରଷ୍ଟାଚାରରୁ ରକ୍ଷା କରିବା ପାଇଁ ପରଂବ୍ରହ୍ମ ନିକଟରେ ଭୀମଭୋଇ ଆକୁଳ ପ୍ରାର୍ଥନା କରିଛନ୍ତି–

''ଏହାଙ୍କର ପାଇଁ ଶ୍ରୀଗୁରୁ ଛାମୁରେ ମାଗୁ ମୁଁ ଅଛି ଏତିକି ।
କନ୍ଦର୍ପ ବାଧାରୁ ଉଦ୍ଧାର ହୁଅନ୍ତୁ ଏ ଧର୍ମେଛନ୍ତି ଯେତିକି ।୧୦।
ଧର୍ମ ଆଶ୍ରେ କଲେ ଯୁଗଳ ନଚଳେ କର୍ମ ଭ୍ରଷ୍ଟ ହେବ ବୋଲି ।
ସ୍ତିରୀ ପୁରୁଷକୁ ଅନଙ୍ଗ ପୀଡୁଛି ନପାରୁଛନ୍ତି ସମ୍ଭାଳି ।୧୧।
ନିଷ୍କାମ ଧର୍ମରେ ସକାମ ପଶୁଛି ହୋଇ ଯାଉଛନ୍ତି ଦୋଷୀ।
ଭବସାଗରକୁ ଘୁଞ୍ଚି ଗୁରୁଦେବ ଫେରି ଯାଉଛନ୍ତି ଭାସି ।୧୨।
ସ୍ତିରୀ ପୁରୁଷଙ୍କୁ ପଞ୍ଚଭୂତ ମନ ଯେମନ୍ତେ ରହିବ ଥୟ ।
ଅନାଦି ଗୁରୁ ଅନ୍ତର୍ଯ୍ୟାମୀ ପୁରୁଷ ସେହି ରୂପେ ଦୟା ବହ ।୧୩।

ଯେଉଁ ରୂପେ ଗୁରୁ କନ୍ଦର୍ପ ବାଧାରୁ ସମ୍ଭାଳି ପାରିବେ ଦେହ ।
ସେପରି କରୁଣା ନେତ୍ର ପଥେ ଚାହିଁ ହେ ଅନାଦି ବ୍ରହ୍ମମୟ ।''୧୮।

(ସ୍ତୁତିଚିନ୍ତାମଣି ଛୟାନବେ ବୋଲି)

ଯଥେଚ୍ଛାଚାର ଯୌନ ସମ୍ପର୍କରୁ ନାନା ପ୍ରକାର ମାରାତ୍ମକ ବ୍ୟାଧି ହୁଏବୋଲି ଭୀମଭୋଇଙ୍କ ଜ୍ଞାନ ଥିଲା । ତେଣୁ ସେ ମାନବ ସମାଜକୁ ସାବଧାନ କରି ଲେଖିଛନ୍ତି–

''ଭବନଦୀ ଜଳ ଭିତରେ ପଶିଲେ ଭବରୋଗ ହୋଏ ପିଣ୍ଡେ ।
ନାନା ଦୁଃଖରେ ପତିତ ହୁଏ ପ୍ରାଣୀ ପଡିଯାଏ କାଳଦଣ୍ଡେ।୧୫।

(ସ୍ତୁତିଚିନ୍ତାମଣି ତେୟାନବେ ବୋଲି)

ଗୃହିଣୀମାନଙ୍କୁ ଉପଦେଶ ଦେଇ ସେ କହୁଛନ୍ତି–

''ସ୍ତିରୀମାନେ ଆଗୋ ଯେ ଅଛ ସଂସାରେ ଘରଦ୍ୱାର ପଛେକର ।
ପୁତ୍ର ଦୁହିତା ଜନ୍ମାଇଲେ କି ହେଲା ତରିବା ପଥକୁ ଧର ।''୭।
ରତି ରମଣ ସୁରତି ସୁଖଭାବ କରୁଥାଅ ପଛେ ତୁମ୍ଭେ ।
ଅନେକ ବିଷୟା ଲାଗିଥାଉ ପଛେ ବ୍ରହ୍ମ କର୍ମଧର ଦମ୍ଭେ।୮।

(ସ୍ତୁତିଚିନ୍ତାମଣି ନବେ ବୋଲି)

ଭୀମଭୋଇଙ୍କ ପକ୍ଷେ ଗୃହସ୍ଥର ଧର୍ମପାଳନ ସକାଶେ ଯେଉଁ ଉପଲବ୍ଧି ତାହା ଅନନ୍ୟ । ସେହି ପରମ ଉପଲବ୍ଧିକୁ ବିଶ୍ଳେଷଣ କଲେ ଯେଉଁ ନିଷ୍କର୍ଷ ଉପନୀତ ହୁଏ, ତାହା ଏହିପରି । ଭୀମଭୋଇ ନିଜ ଜୀବନରେ ଏକନିଷ୍ଠ ସାଧନା କରି ଯେଉଁ ସିଦ୍ଧି ପାଇଛନ୍ତି ସେହି ସିଦ୍ଧି ସମ୍ପର୍କରେ ଜଗତବାସୀଙ୍କୁ ଅମୂଲ୍ୟ ଜ୍ଞାନ ବିତରଣ କରିଯାଇଛନ୍ତି । ତାହାକୁ ସାଧାରଣ ଲୋକ ନିଜ ନିଜର ସାମାନ୍ୟ ସାଧାରଣ ବୁଦ୍ଧି, ଚର୍ମ ଚକ୍ଷୁରେ ଦେଖି ନ୍ୟୂନ ଭାବରେ ଲଘୁ ମନ୍ତବ୍ୟ ଦେଇଥାନ୍ତି । ମାତ୍ର ଅନ୍ତର୍ଦୃଷ୍ଟି ନେଇ ଦେଖିବାକୁ ଚେଷ୍ଟାକଲେ ମହାଯୋଗୀ ଭୀମଭୋଇଙ୍କ

ଦିବ୍ୟଦୃଷ୍ଟିର ସନ୍ଧାନ ମିଳେ । ଗୃହ ଧର୍ମମାର୍ଗର ବାଟ ବତାଇବାକୁ ଯାଇ ଭୀମଭୋଇ ମାନବ ସମାଜକୁ ଯେଉଁ ଶିକ୍ଷା ଦେଇଛନ୍ତି ତାହା ହେଉଛି ଆଧ୍ୟାତ୍ମିକ ସାଧନାର ଏକ ପ୍ରକୃଷ୍ଟ ମାର୍ଗ । ଯୌନରୁ ଜୀବନମୁକ୍ତିର ଯେଉଁ ବାଟ ଭୀମଭୋଇ ନିର୍ଦ୍ଦେଶ କରିଛନ୍ତି ତାହା ବାସ୍ତବିକ ବିରଳ । ଏତେ ସାବଲୀଳ ଭାଷା ଓ ଭାବନେଇ ସେ ତାହାର ଯେଉଁ ସରଳ ବ୍ୟାଖ୍ୟା କରିଛନ୍ତି ତାହା ଜଣେ ସାଧକକୁ ଚମତ୍କୃତ କରେ । ସେହି ବାଟଟି ହେଲା, ସାଧକ ଅବାଟରେ ଇନ୍ଦ୍ରିୟ ସୁଖ ପାଇଁ ଯେତେବେଳେ ଅଗ୍ରସର ହୁଏ ସେତେବେଳେ ମଧ୍ୟ ସେ ନାମକୁ ନଛାଡି ତାହାକୁ ଜପୁଥିବା ଆବଶ୍ୟକ । ଭୀମଭୋଇଙ୍କ କହିବାନୁସାରେ ରତିସୁଖ ସମ୍ଭୋଗ ସମୟରେ ମଧ୍ୟ ଅଲେଖ ମହିମା ଗୁରୁ ପରଂବ୍ରହ୍ମର ନାମ ଜପୁଥିବ ।

''ଗୁରୁ ସୁମରି ରତିସୁଖ କରିବ ଭାରିଯାକୁ କୋଳେ ଘେନି ।
ତେତେବେଳରେ ବିରୁଦ୍ଧ ନକରିବ ଜପୁଥିବ ନାମଧ୍ୱନି ।୮।

(ସ୍ତୁତିଚିନ୍ତାମଣି ପଞ୍ଚାଅଶୀ ବୋଲି)

ତୈଳଧାରବତ୍ ନାମ ସ୍ମରଣ ହେବା ଉଚିତ୍ । ମୁହୂର୍ତ୍ତକ ପାଇଁ ମଧ୍ୟ ପ୍ରଭୁନାମ ସ୍ମରଣରୁ ସାଧକ ବିଚ୍ୟୁତ ହେବା ଉଚିତ୍ ନୁହେଁ । କେତେବେଳେ କାହାକୁ ମହାକାଳ ଗ୍ରାସକରି ମୃତ୍ୟୁମୁଖକୁ ଠେଲି ଦେବ କିଏ ଜାଣେ ? ଅନ୍ତକାଳରେ ବିଭୁନାମ ସ୍ମରଣ ହେଲେ ମନୁଷ୍ୟ ମୋକ୍ଷ ଲାଭକରେ ବୋଲି ବିଶ୍ୱାସ ଅଛି । ଅଜାମିଳ ଭଳି ପାପୀ ପୁଅର ନାମ ଧରି '' ରଖିରେ ନାରାୟଣ'' କହି ଭବସାଗରୁ ପାରି ହୋଇଗଲା । ତେବେ ନିରନ୍ତର କିପରି ପ୍ରଭୁଙ୍କ ନାମ ଜପ ହେବ ସେ ସମ୍ପର୍କରେ ଆମର ପୂର୍ବସୂରୀମାନେ ଦିଶାନିର୍ଦ୍ଦେଶ କରି ଯାଇଛନ୍ତି। ଏପରିକି ଆମର ଶାରୀରିକ କ୍ରିୟାକଳାପ ସମୟରେ ଯେତେବେଳେ ନାମ ସ୍ମରଣ ବିସ୍ମରଣ ହେବାର ସମ୍ଭାବନା ଅଛି ସେତେବେଳେ କିପରି ପ୍ରଭୁଙ୍କ ସ୍ମରଣ ହେବ ସେ କଥା ବତେଇ ଦେଇଛନ୍ତି । ପ୍ରଥମେ ଛିଙ୍କିଲା ସମୟରେ ପ୍ରତ୍ୟେକ ମଣିଷର ହୃଦୟନ୍ତ୍ର କ୍ରିୟା ବନ୍ଦ ହୋଇଯାଏ । ସେଥିପାଇଁ ଛିଙ୍କିଲା ସମୟରେ ହେରାମ୍, ହେ ଭଗବାନ୍ ଭଳି ପ୍ରଭୁଙ୍କ ନାମ ଉଚ୍ଚାରଣ କରିବା ପାଇଁ ପିଲାବେଳୁ ଆଈମା ଆମକୁ ଶିଖାଇ ଥା'ନ୍ତି, ଯାହା ଆମେ କରୁ । ଠିକ୍ ସେହିପରି ରତିସୁଖ ସମ୍ଭୋଗ ବେଳେ ବିନ୍ଦୁପାତ ବା ରଜବୀର୍ଯ୍ୟ ମିଳନ ସମୟରେ ମସ୍ତିଷ୍କ ଶୂନ୍ୟ ହୋଇଯାଏ । ତାହାକୁ 'ସମାଧି' ସହିତ ତୁଳନା କରି ମହାସୁଖ ବୋଲି ଆଖ୍ୟା ଦିଆଯାଇଛି । ସେତିକିବେଳେ ଭଗବାନଙ୍କୁ ଭୁଲିଯିବାର ସମ୍ଭାବନା ଅଛି । ତେଣୁ ଭୀମଭୋଇ ସେତେବେଳେ ମଧ୍ୟ ନାମଧ୍ୱନି ଜପ କରୁଥିବା ପାଇଁ ଭକ୍ତ ସାଧକକୁ ଅମୂଲ୍ୟ ପରାମର୍ଶ ଦେଇଛନ୍ତି । ସେଭଳି ନାମଜପ, ସାଧନା ବଳରେ ନିଶ୍ଚିତଭାବେ ସମ୍ଭବ ବୋଲି ଏ ଲେଖକର ଉପଲବ୍ଧି ହୋଇଛି । ଭୀମଭୋଇ ତାଙ୍କ ରଚନାବଳୀରେ କୌଣସି ଅବାନ୍ତର ବା ଅସମ୍ଭବ କଥାର ଅବତାରଣା ମୋଟେ କରି ନାହାନ୍ତି । ସାଧାରଣ ଲୋକ ଭୀମଭୋଇଙ୍କ କଥା ବୁଝି ପାରିବେ ନାହିଁ ମାତ୍ର ସାଧକମାନଙ୍କ ପାଇଁ ଭୀମଭୋଇ ଏକ ଖୋଲା ପୃଷ୍ଠା ଯାହାକୁ ପଢି ସାଧକମାନେ କେବଳ ଜ୍ଞାନ ଆହରଣ କରିପାରିବେ ନାହିଁ ବରଂ ତାଙ୍କ ପ୍ରଦର୍ଶିତ ପଥ ଦେଇ ସାଧନା ମାର୍ଗରେ ସିଦ୍ଧିଲାଭ ମଧ୍ୟ କରିପାରିବେ ।

''ବଡିମା କହିଲା ବୋଲିବେ ଜଗତେ ତେଣୁ କରି ମୋର ଭୟ ।
ମୁହିଁସିନା ଜାଣେ ମୋ ଜନ୍ମର କଥା ଅନାଦି ଗୁରୁଙ୍କ ପୁଅ ।୮।
ସଂସାର ମଧ୍ୟରେ କେମନ୍ତେ ଜାଣିବେ ନର ଅଙ୍ଗେ ଦେହ ବହି ।
ଆତଯାତ କଥା ଯୁଗର ବ୍ୟବସ୍ଥା ସମସ୍ତଙ୍କୁ ଜଣାନାହିଁ ।୯।
ହୃଦୟରେ ଭେଦ ସାରସ୍ୱତ ପଦ ଅନୁଭବେ ନାହିଁ ବୁଦ୍ଧି ।
ନରଦେହ ବହି ସର୍ବେ ଅଣଚେତା କାହୁଁ ଜାଣିବେ ସେ ସିଦ୍ଧି ।୧୦।
ରୂପ ରସ ଗନ୍ଧ ରଙ୍ଗେ ମାତି ସର୍ବେ ଭୁଲାଇ ନେଉଛି ମାୟା ।
ମୋହିନୀ ମଦେ ପଡିଛନ୍ତି ସମସ୍ତେ ପାଶୋରି ଜୀବନ କାୟା ।୧୧।
ଜଗତ ଭିତରେ ସଂସାରସାଗରେ ବଖାଣିଲି କବିକୃତ ।
ଯେତେ ବୁଝାଇଲି ନ ବୁଝିଲେ କେହି କୋପ କରି ଅପ୍ରମିତ।୧୨।
କୋଳରେ ବସାଇ ମନରେ ମିଶାଇ କହୁ କହୁ କର୍ଣ୍ଣପାଶେ ।
ନଦୀଜଳ ପ୍ରାୟ ବଢି ଯାଉଅଛି ଜ୍ଞାନ ନ ଭେଦିଲା ଲେଶେ ।୧୩।
ମୁହିଁ କହୁଥାଇ ମନରେ ବିଚାରି ମୁକତି ପଦକୁ ଭାଳି ।
ଜଣ ଜଣ କରି ବୁଝାଇ କହଇ ସର୍ବେ ତରିଯିବୁଁ ବୋଲି।୧୪।
ଦୁର୍ଲ୍ଲଭ ଜନମ ଦେହ ବହିଛନ୍ତି କରି ନୁହେଁ ବଡସାନ ।
କଥାର ପ୍ରସଙ୍ଗେ କହି ନେଉଥାଉ ଶୁଣ ଶୁଣ ସର୍ବଜନ ।୧୫।
ଧରମ ପଥକୁ ଆଶ୍ରିତ କରାଇ ବତାଇ ଦିଅଇ ଜ୍ଞାନ ।
ଆତ୍ମା ଭକତିକି ଜୀବ ମୁକତିକି ପ୍ରତ୍ୟକ୍ଷ କରାଇ ଚିହ୍ନ ।୧୬।
କପଟ ନକରି ଧୂଳି ମାଟିପରି ବାଣ୍ଟି ଦେଉଥାଇ ଭାଗ ।
ପୁତ୍ର ପରାଏ ଆହାଲାଦ କରାଇ କହୁ ଥାଇ ଜ୍ଞାନ ଯୋଗ ।୧୭।
କିଅବା ସ୍ତିରୀ ସେ କି ଅବା ପୁରୁଷ ବାଳ ବୃଦ୍ଧ ଯୁବା ଯେତେ।
ଭିନ୍ନ ଭିନ୍ନ କରି ଚିହ୍ନାଇ ଦିଅଇ ସଂଶୟ ନରଖି ଚିତ୍ତେ।୧୮।

(ସ୍ତୁତିଚିନ୍ତାମଣି, ଚତୁଃତ୍ରିଂଶ ବୋଲି)

---

ବ୍ଲକ୍‌ଛକ, ସୁବର୍ଣ୍ଣପୁର

# ମୁକ୍ତିର ମହାକବି ଭୀମଭୋଇ

ଡକ୍ଟର ହୁସେନ ରବିଗାନ୍ଧୀ

ସଂପ୍ରତି ''ଆଧୁନିକ ଓଡ଼ିଆ କାବ୍ୟଧାରାର ପ୍ରବର୍ତ୍ତକ କ'ଣ ରାୟବାହାଦୂର ରାଧାନାଥ ରାୟ କି ?'' ଉପରେ ବିତର୍କ ଆରମ୍ଭ ହୋଇଯାଇଛି । ସ୍ୱାଧୀନତା ପୂର୍ବରୁ କିଛି ଅଧ୍ୟାପକ ଓ ଇଂରେଜ ଭକ୍ତ ଲେଖକ ରାଧାନାଥ ରାୟଙ୍କୁ ଆଧୁନିକ ଓଡ଼ିଆ କାବ୍ୟଧାରାର ଆଦ୍ୟ ପ୍ରବର୍ତ୍ତନ ଭାବେ ଗ୍ରହଣ କରି ଅନେକ ପୁସ୍ତକ ଓ ଅନେକ ଆଲେଖ୍ୟ ରଚନା କରି ପ୍ରକାଶିତ କରିଥିଲେ । ସ୍ୱାଧୀନତା ପରେ ମଧ୍ୟ ଆମ ସାହିତ୍ୟର ସଂଖ୍ୟାଧିକ ଆଲୋଚକ ଏହି ଧାରାଟିକୁ ସମର୍ଥନ କରି ଆସିଲେ । ସତ କହିବାକୁ ଗଲେ, ଆମ ସାହିତ୍ୟରେ ଅଧିକାଂଶ ଆଲୋଚକ ''ଆଧୁନିକତା କାହାକୁ କୁହାଯାଏ'', ସେ ସମ୍ପର୍କରେ ବିଶେଷ ଧାରଣା ରଖନ୍ତି ନାହିଁ । ସମାଜର ଆର୍ଥିକ ବିଭକ୍ତିକରଣର ପ୍ରଭାବ ଯେ ସାହିତ୍ୟରେ ଦେଖିବାକୁ ମିଳିଥାଏ, ତାକୁ ଅଧିକାଂଶ ଆଲୋଚକ ସ୍ୱୀକାର କରନ୍ତି ନାହିଁ । କାରଣ, ସମାଜର ଶ୍ରେଣୀ ବିଭାଗକୁ ଏହି ତଥାକଥିତ ବୁଦ୍ଧିଜୀବୀ ଏବଂ ଆଲୋଚକମାନେ ଦେଖି କରି ମଧ୍ୟ ଅଦେଖା କରିଥାନ୍ତି । ଏହି ବୁଦ୍ଧିଜୀବୀ ଓ ମସୀଧାରୀମାନେ ସମାଜର ଉଚ୍ଚବର୍ଗ (ଯଥା ଉଚ୍ଚବର୍ଣ୍ଣ ବା ସଂଭ୍ରାନ୍ତଶ୍ରେଣୀ)ର ପ୍ରତିନିଧିତ୍ୱ କରନ୍ତି । ଆଧୁନିକତାର ଅର୍ଥ ହେଉଛି, ସମାଜରେ ପ୍ରଚଳିତ କୁବିଶ୍ୱାସକୁ ମୂଲ୍ୟବୋଧ, ସାମାଜିକ ଭେଦାଭେଦ, ଅସାମ୍ୟ ବା ଅନୈକ୍ୟ ବିରୁଦ୍ଧରେ ସ୍ୱର ଉଠାଇ ନିଜ ଲେଖନୀରେ ତାକୁ ଚିତ୍ରଣ କରିବା, ତାକୁ ପ୍ରତିବାଦ ଓ ପ୍ରତିରୋଧ କରିବା, ଲୋକସାଧାରଣଙ୍କୁ ଅସାମ୍ୟ ଅନୈକ୍ୟ ବିରୁଦ୍ଧରେ ସଙ୍ଗଠିତ ହେବାକୁ ନିଜ ଲେଖନୀ ମାଧ୍ୟମରେ ଆହ୍ୱାନ ଜଣାଇବା । ଆମ କଥା ସାହିତ୍ୟର ଜନକ ଫକୀର ମୋହନ ହିଁ ଥିଲେ ଓଡ଼ିଶାର ସାମାଜିକ ଦୁର୍ବଳ ବର୍ଗର ଅନନ୍ୟ ପ୍ରତିନିଧି । ତାଙ୍କ ଉପନ୍ୟାସ ''ଛ'ମାଣ ଆଠଗୁଣ୍ଠ''ର ଦୁଇ ପ୍ରମୁଖ ଚରିତ୍ର–ସାରିଆ ଓ ଭଗିଆ, ଓଡ଼ିଶାର ଶ୍ରେଣୀ ବିଭକ୍ତ ତଥା ଜାତି ବିଭକ୍ତ ସମାଜରେ ଦରିଦ୍ର, ଶୁଦ୍ର ସଂପ୍ରଦାୟର ନିଚ୍ଛକ ପ୍ରତିନିଧିତ୍ୱ କରନ୍ତି । ''ଲଛମା'' ଉପନ୍ୟାସରେ ମରହଟ୍ଟା ବର୍ଗୀମାନଙ୍କର ମୁକାବିଲା କରିବାକୁ କୌଣସି ସଂଭ୍ରାନ୍ତ ରାଜା ବା ସାମନ୍ତ ଆସିନାହାନ୍ତି । ସାମାନ୍ୟ ଚାଷୀ (ଖଣ୍ଡାୟତ) ସଂପ୍ରଦାୟରୁ ଆସିଥିବା ଚରିତ୍ର ହିଁ ଏହି ସାହସ କରିଛି ଏବଂ ସଫଳ ହୋଇଛି । '' ରାଣ୍ଡିପୁଅ ଅନନ୍ତା'' ଗଳ୍ପର ନାୟକ ଉଦ୍ଦଣ୍ଡ ଗଉଡ ଟୋକା ଅନନ୍ତା ସାରା ଗାଁକୁ ବନ୍ୟାର କରାଳ କବଳରୁ ରକ୍ଷା କରିବା ପାଇଁ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଛି । ଫକୀର ମୋହନ କେଉଁଠାରେ ବି ରାଜା, ରାଣୀ, ଜମିଦାର, ସଂଭ୍ରାନ୍ତ ଅଥବା ଉଚ୍ଚବର୍ଣ୍ଣଙ୍କର ମୁଖପାତ୍ର ସାଜି ନାହାନ୍ତି । ଅଥଚ ଏଇ କଥା ଆମେ ରାୟବାହାଦୂର ରାଧାନାଥ ରାୟଙ୍କ କାବ୍ୟ–କବିତାରେ ଦେଖିବାକୁ ପାଉନା । ''ଦରବାର'' କାବ୍ୟ ବ୍ୟତୀତ ଅନ୍ୟତ୍ର ତାଙ୍କ ସାହିତ୍ୟ ସଂଭ୍ରାନ୍ତ ଶ୍ରେଣୀର ହିଁ ସପକ୍ଷରେ ରଚିତ ହେବାପରି ଲାଗୁଛି । ''ମହାଯାତ୍ରା''(ଅସଂପୂର୍ଣ୍ଣ ଖଣ୍ଡକାବ୍ୟ)ରେ ସେ ଜାତୀୟତାର କିଛିଟା ଆଭାଷ ଦେବାକୁ ଚେଷ୍ଟା କରିଥିଲେ ବି ଉକ୍ତ ଜାତୀୟତା ଆଭିଜାତ୍ୟ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ଥିଲା । ଫକୀର ମୋହନଙ୍କ ପରି ସେ ନିଃଷ୍ପେସିତ ଶ୍ରେଣୀ ପାଇଁ କିଛି ବି ଲେଖି ନାହାନ୍ତି । କବି ହରପ୍ରସାଦ ଦାସ ତେଣୁ ଯଥାର୍ଥରେ ରାୟବାହାଦୂର ରାଧାନାଥ ରାୟଙ୍କୁ ମଧ୍ୟଯୁଗୀୟ ରୀତିକାଳୀନ କାବ୍ୟଧାରାର ଶେଷ କାବ୍ୟକାର ବୋଲି ତାଙ୍କର 'ଓଡ଼ିଆ ଜାତିର ଇତିବୃତ୍ତି' ଧାରାବାହିକ ପ୍ରବନ୍ଧମାନଙ୍କରେ ଠାଏ ମତପ୍ରକାଶ କରିଛନ୍ତି । ମଧ୍ୟଯୁଗୀୟ ରୀତିକାଳ ହେଉଛି ସାମନ୍ତବାଦୀ ଓ ପ୍ରତିକ୍ରିୟାଶୀଳ ସ୍ଥିତାବସ୍ଥା, ବର୍ଣ୍ଣ ବ୍ୟବସ୍ଥାବାଦୀ ସାମାଜିକ ବ୍ୟବସ୍ଥାର ପ୍ରତିଛବି । ଏହି ଛବିରୁ ରାୟବାହାଦୂର ରାଧାନାଥ ଊର୍ଦ୍ଧ୍ୱକୁ ଯାଇପାରିନାହାନ୍ତି । ତେଣୁ ରାଧାନାଥ ଆଧୁନିକ କାବ୍ୟଧାରାର ପ୍ରବର୍ତ୍ତକ ନୁହନ୍ତି ବୋଲି ସାଂପ୍ରତିକ ପ୍ରଗତିବାଦୀ କାବ୍ୟ ଚେତନା ସମ୍ପୂର୍ଣ୍ଣ ଆଲୋଚକମାନେ

ଏକମତ । ଅବଶ୍ୟ ଏହାକୁ ଉଚ୍ଚବର୍ଣ୍ଣର ପ୍ରତିକ୍ରିୟାଶୀଳ ଆଲୋଚକମାନେ ଖଣ୍ଡନ କରିଥାନ୍ତି ଓ ବ୍ରିଟିଶ ସରକାରଙ୍କ ସପକ୍ଷବାଦୀ ରାଧାନାଥଙ୍କୁ ଆଧୁନିକ କାବ୍ୟକଳାର ଆଦ୍ୟ ପ୍ରବର୍ତ୍ତକ ବୋଲି ଏବେ ବି ମନେ କରନ୍ତି ।

ଏଠାରେ ବିଚାର କରିବାର କଥା ହେଉଛି ଯେ, ଆଧୁନିକତାର ଅର୍ଥ କ'ଣ ?

ଆଧୁନିକତାର ଅର୍ଥ କହିଲେ ପ୍ରଗତିଶୀଳ ଆଲୋଚକମାନେ ଯାହା କହନ୍ତି ସ୍ଥିତାବସ୍ଥାର ସମର୍ଥକମାନେ ସେଥିରେ ଏକମତ ହୁଅନ୍ତି ନାହିଁ । ହଜାର ହଜାର ବର୍ଷ ପୁରାତନ ଉଚ୍ଚ, ନୀଚ, ସଂଭ୍ରାନ୍ତ, ଦରିଦ୍ର, ସ୍ପୃଶ୍ୟ, ଅସ୍ପୃଶ୍ୟ ସମାଜ ବ୍ୟବସ୍ଥାକୁ ସବୁଦିନ ପାଇଁ କାଏମ୍ ରଖିବାକୁ ସମର୍ଥନ କରୁଥିବା ବୁଦ୍ଧିଜୀବୀଙ୍କ ସହିତ ଯେଉଁମାନେ ଏକମତ ହୋଇପାରନ୍ତି ନାହିଁ, ସେମାନେ ସମାଜ ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ ପାଇଁ ଖାଲି ବିଚାର ଉପସ୍ଥାପିତ କରନ୍ତି ନାହିଁ, ବରଂ ସେଥିପାଇଁ ସକ୍ରିୟ ଭାବେ କାର୍ଯ୍ୟ ମଧ୍ୟ କରିଥାନ୍ତି ।

ଆଧୁନିକତା ହେଉଛି, ଶୋଷଣ ବିହୀନ, ଜାତିବିହୀନ, ସାମନ୍ତବାଦୀ-ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥା ଭିତରେ ନିଷ୍ପେସିତ ଅବସ୍ଥାରେ ଥିବା ଶୋଷିତ, ଦଳିତ, ଅବହେଳିତ ମଣିଷ ପାଇଁ ମୁଖପାତ୍ର ରୂପେ କାର୍ଯ୍ୟ କରୁଥିବା ସମୟ ଏବଂ ଏହି ସମୟରୁ ସୃଷ୍ଟି ସାହିତ୍ୟ, କଳା, ରାଜନୀତି ଓ ସାମାଜିକ ବ୍ୟବସ୍ଥା । ଆଧୁନିକ ବିଚାରର ପରିପ୍ରକାଶ ହେଉଛି ଗତାନୁଗତିକତାକୁ ପରିହାର କରି ପରିବର୍ତ୍ତନ ସପକ୍ଷରେ ଏକ କ୍ରାନ୍ତିକାରୀ ଭୂମିକା ନିର୍ବାହ କରିବା ।

ଓଡ଼ିଆ ସାହିତ୍ୟର ଘୋର ସାମନ୍ତବାଦୀ, ଜାତିଆଣବାଦୀ ପର୍ଯ୍ୟାୟ ଭିତରେ ଜଗନ୍ନାଥ ଦାସ, ବଳରାମ ଦାସ ଓ ଅଚ୍ୟୁତାନନ୍ଦ ଥିଲେ ଅନେକ ପରିମାଣରେ ସଂସ୍କାରଧର୍ମୀ ଏବଂ ଗତାନୁଗତିକଠାରୁ ଯଥେଷ୍ଟ ଊର୍ଦ୍ଧ୍ୱରେ । ସେମାନେ ବର୍ଣ୍ଣବ୍ୟବସ୍ଥା ବିରୁଦ୍ଧରେ କାର୍ଯ୍ୟ କରିଥିଲେ ନିଜର ସାରସ୍ୱତ ସୃଷ୍ଟି ମାଧ୍ୟମରେ । ଏପରିକି ମଧ୍ୟଯୁଗୀୟ ପୁରୋହିତବାଦ ଓ ସାମନ୍ତବାଦ ସହ ସେମାନଙ୍କ ସାହିତ୍ୟ ସାଲିସ୍ କରିନାହିଁ ।

ତା'ପରେ ମଧ୍ୟଯୁଗୀୟ ରୀତିକାଳରେ ଏହି ନୀରବ ପ୍ରତିରୋଧର ସ୍ୱର ପ୍ରତିବାଦରେ ପରିଣତ ହୋଇଥିଲା ଏବଂ କବି ଦୀନକୃଷ୍ଣ ସାମନ୍ତବାଦ ବିରୁଦ୍ଧରେ କ୍ରାନ୍ତିକାରୀ, ଐତିହାସିକ ପରିଭାଷା ସୃଷ୍ଟି କରିବାରେ ସକ୍ଷମ ହୋଇଥିଲେ । ଦୀନକୃଷ୍ଣ ଦାସଙ୍କର ସେହି କ୍ରାନ୍ତିକାରୀ ଉଚ୍ଚାରଣ: ''କବି ଯା'କରେ ମୂର୍ଖକୁ ସ୍ତୁତି/ଏଥିକୁ ପ୍ରତି ନାହିଁ ବିପତ୍ତି/ଏଥିକି ପ୍ରତିକୁ ଛାତିରେ କାତି ମାରିବା ଭଲ ଯେ...'' । ଆମ ଭାଷା ସାହିତ୍ୟରେ ସାମନ୍ତବାଦ/ଉଚ୍ଚବର୍ଣ୍ଣବାଦ ବିରୁଦ୍ଧରେ ପ୍ରଥମ ବୈପ୍ଳବିକ ଆଲେଖ୍ୟ ।

କବି ଦୀନକୃଷ୍ଣଙ୍କ ଠାରୁ ରାଧାନାଥ ରାୟଙ୍କ କାଳ ଭିତରେ ପ୍ରାୟ ୨୫୦ରୁ ଅଧିକ ବର୍ଷର ସମୟ ବିତି ଯାଇଛି । ସାମନ୍ତବାଦକୁ କବଳିତ କରିଛି ସାମ୍ରାଜ୍ୟବାଦ । ସାମ୍ରାଜ୍ୟବାଦ ଆସିଛି ଆର୍ଥିକ ଶୋଷଣ ଓ ରାଜନୈତିକ ପରାଧୀନତା ସହିତ ସମସ୍ତ ଅବକ୍ଷୟ ତଥା ସ୍ଖଳନକୁ ନିଜ ଭିତରେ ଦୃଢ ଭାବେ ଜାବୁଡି ଧରି ଶୋଷଣ ଓ ଉତ୍ପୀଡନ ପାଇଁ ସ୍ଥାନୀୟ ରାଜା, ଜମିଦାର, ସାମନ୍ତ, ସାହୁକାର ତଥା ସଂଭ୍ରାନ୍ତମାନଙ୍କର ଏକ ପାପ-ଚକ୍ର ସୃଷ୍ଟି କରାଇ, ସଂଖ୍ୟାଧିକ ମେହନତୀ ପ୍ରଜାଙ୍କ ସର୍ବସ୍ୱ ଅପହରଣ କରି ନିଜର ନିହିତ ସ୍ୱାର୍ଥ ଓ ଆର୍ଥିକ ମୁନାଫାକୁ କାଏମ୍ ରଖିବା ପାଇଁ ଏହି ସାମ୍ରାଜ୍ୟବାଦୀ ଶକ୍ତି ସବୁବେଳେ ଉଦ୍ୟମ କରିଛି । ଏହି ପାପ-ଚକ୍ରର କୁପରିଣାମ ସଦୃଶ ଉଚ୍ଚଶ୍ରେଣୀର ଲୋକଙ୍କ ଭିତରେ ନୈତିକତାର ସ୍ଖଳନ, ମାନବବାଦୀ ସଂସ୍କୃତିର ଅବକ୍ଷୟ ଓ ସମାଜରେ ସମାନତାର ବିଲୋପ ଘଟିଛି । ଏହି ସାମାଜିକ ବ୍ୟବସ୍ଥା ଭିତରେ ସବୁଠାରୁ ଅଧିକ ଦୟନୀୟ ପରିସ୍ଥିତିର ସମ୍ମୁଖୀନ ହୋଇଛି ଆମ ସମାଜର ଦଳିତ (ଅସ୍ପୃଶ୍ୟ) ଏବଂ ବଣ-ପର୍ବତ କୋଳରେ ପ୍ରତିପାଳିତ ପ୍ରକୃତିର ସନ୍ତାନ ଆଦିବାସୀ ସଂପ୍ରଦାୟ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଯେତେବେଳେ ରାୟବାହାଦୂର ରାଧାନାଥ ଇଂରେଜମାନଙ୍କ ସାମ୍ରାଜ୍ୟବାଦୀ ସରକାର ଅଧୀନରେ ଏକ ଉଚ୍ଚପଦବୀରେ ଆସୀନ ଥିଲେ, ସେତେବେଳେ ଉପକୂଳବର୍ତ୍ତୀ ଓଡ଼ିଶା ଠାରୁ ବହୁଦୂରରେ ପ୍ରାକୃତିକ ଓଡ଼ିଶାର ଆଭ୍ୟନ୍ତରୀଣ ଅଞ୍ଚଳରେ ଘୋର ବଣ-ଜଙ୍ଗଲ ପରିପୂର୍ଣ୍ଣ ଇଲାକାର ଏକ ସୈରାଚାରୀ ଓ ଅତ୍ୟାଚାରୀ ରାଜତନ୍ତ୍ର ଦ୍ୱାରା ଶାସିତ ଛୋଟ ଗୋଟିଏ ଅନଗ୍ରସର, ଅନ୍ଧକାରମୟ ଗଡଜାତ ରାଜ୍ୟ ରେଢାଖୋଲ ଅଞ୍ଚଳରେ ଗୋଟିଏ କନ୍ଧଯୁବକ ଗାଈ, ମଇଁଷି ଚରାଉ ଚରାଉ ବନବାସୀ ଓ ଦଳିତଙ୍କର ପ୍ରାଣକର୍ତ୍ତାରେ ରୂପାନ୍ତରିତ ହୋଇଯାଇଥିଲେ । ସେ କନ୍ଧ ଯୁବକ ମହାନ ବିପ୍ଳବୀ କବି ଭୀମ ଭୋଇ ହିଁ ଥିଲେ ।

ଭୀମ ଭୋଇ ୧୮୪୨ ସାଲରେ ରେଢାଖୋଲ ରାଜ୍ୟରେ ଆବିର୍ଭାବ ହୋଇଥିଲେ ଏବଂ ସୋନପୁର ଗଡଜାତ (ବର୍ତ୍ତମାନର ସୁବର୍ଣ୍ଣପୁର ଜିଲ୍ଲା) ଅନ୍ତର୍ଗତ ଖଲିଆପାଲୀ ଗ୍ରାମରେ ୧୮୯୫ ସାଲରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । କେବଳ ରେଢାଖୋଲର ବନବାସୀ ବା ଦଳିତମାନଙ୍କ ପାଇଁ ସେ ମୁକ୍ତିର

ଖଞ୍ଜଣି ବଜାଇ ନଥିଲେ, ସେ ସମଗ୍ର ମାନବଜାତି ମଧ୍ୟରେ ଥିବା ସମସ୍ତ ଦଳିତ, ନିଷ୍ପେସିତ, ଅତ୍ୟାଚାରିତ, ଆର୍ତ୍ତ ପ୍ରାଣୀଙ୍କ ଅପ୍ରମିତ ଦୁଃଖ, କଷ୍ଟ ଲାଘବ କରିବା ପାଇଁ ନୂଆ ଚିନ୍ତନ, ନୂଆ ଦର୍ଶନର ବ୍ୟାଖ୍ୟାକାର ଭାବେ ଆତ୍ମପ୍ରକାଶ କରିଥିଲେ । ମହାମନୀଷୀ ମହିମା ଗୋସେଇଁଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇ କିଶୋର ଭୀମ ଦଳିତ ବନବାସୀ ଓ ସକଳ ଆର୍ତ୍ତଜନଙ୍କର ତ୍ରାପରେ ରୂପାନ୍ତରିତ ହେଲେ । ସେ ତତ୍କାଳୀନ ସମାଜର ଉଚ୍ଚ,ନୀଚ, ଧନୀ, ଦରିଦ୍ର ଏବଂ ସର୍ବୋପରି ରାଜତନ୍ତ୍ରକୁ ପ୍ରତ୍ୟାଖ୍ୟାନ କରିବାକୁ ଜନସାଧାରଣଙ୍କୁ ଆହ୍ୱାନ ଦେଲେ । ପୁରୋହିତବାଦ, ମୂର୍ତ୍ତିପୂଜା, ପ୍ରଚଳିତ ଧର୍ମଧାରଣା ଇତ୍ୟାଦିକୁ ଅସ୍ୱୀକାର କଲେ । ମାନବଜାତିର ଐକ୍ୟକୁ ପ୍ରତିଷ୍ଠା କରିବା ପାଇଁ ମାନବିକ ସାମ୍ୟଭାବର ଉଦ୍‌ଘୋଷଣା କଲେ ଏବଂ ଏହି କ୍ରାନ୍ତିକାରୀ କାର୍ଯ୍ୟ ପାଇଁ ସେ କାବ୍ୟ-କବିତାକୁ ମାଧ୍ୟମ କରି ଆମ ଭାଷା-ସାହିତ୍ୟରେ ଆଧୁନିକତାର ଆଦ୍ୟ ପ୍ରବର୍ତ୍ତକ-ଅର୍ଥାତ୍ ସାଧାରଣ ମଣିଷର ଭାଷ୍ୟକାର ଭାବରେ ପୂଜନୀୟ ତଥା ଅବିସ୍ମରଣୀୟ ସାରସ୍ୱତ ସ୍ରଷ୍ଟା ହୋଇଗଲେ । ସେ ବ୍ରାହ୍ମଣବାଦ ଓ ରାଜତନ୍ତ୍ରକୁ ଅସ୍ୱୀକାର ଏହି ବୃତ୍ତିସହ ସମ୍ପୃକ୍ତ ବ୍ୟକ୍ତିମାନଙ୍କ ଘରେ ଭୋଜନ ନକରିବା ପାଇଁ ଲୋକମାନଙ୍କୁ କହି ଗଲେ ।

ଏହି ସମୟଠାରୁ ଶହ ଶହ ବର୍ଷ ପୂର୍ବରୁ ସେ ଜନ୍ମଗ୍ରହଣ କରିଥିଲେ । ସେଇଥିପାଇଁ ତ ସେ ଉଦାତ୍ତ କଣ୍ଠରେ ଘୋଷଣା କଲେ- ''ରାଜାର ପରଜା ନୋହୁଁ ସିନା ଆମ୍ଭେ/ନୋହୁଁ ସାହୁର ଖାତକ/ଯହିଁ ଗୁରୁନେବେ, ତହୁଁ ଯାଉ ଆମ୍ଭେ/କେ ଅବା କରୁ ଅଟକ'' (ସ୍ତୁତି ଚିନ୍ତାମଣି, ଚଉଷଠି ବୋଲି) ।

ଆମ ସମୟର ଜଣେ ସଂଭ୍ରାନ୍ତ ଶ୍ରେଣୀର ଖୋଲା ସମର୍ଥକ ଓ ଅନୁଦାରବାଦୀ ଆଲୋଚକ/ସ୍ରଷ୍ଟା କବି ଡକ୍ଟର ମାୟାଧର ମାନସିଂହ ଭୀମଭୋଇଙ୍କୁ ଆଦିବାସୀଙ୍କ କବି ବୋଲି ନିଜର ଓଡ଼ିଆ ଭାଷାର ଇତିହାସରେ ଲେଖିଲେ: ହେଲେ କିଛି ଯାଏ ଆସେନା, କାରଣ ଭୀମ ଭୋଇ ଯଦି ଆଦିବାସୀ କବି, ତେବେ ମାନସିଂହ ରକ୍ଷଣଶୀଳ, ଶୋଷକ, ସାମନ୍ତବାଦୀ ଶ୍ରେଣୀର କବି ନିଶ୍ଚୟ ? ହେଲେ ଏହି କନ୍ଧ ଆଦିବାସୀ ଭୀମ ଭୋଇ ସକଳ ମାନବଜାତି ମଧ୍ୟରେ ଥିବା ସବୁ ଦଳିତ ଓ ନିଷ୍ପେସିତଙ୍କ ମୁକ୍ତି ବାର୍ତ୍ତା ଘୋଷଣା କରି ନିଜେ ନର୍କକୁ (ଅର୍ଥାତ୍ ଯନ୍ତ୍ରଣାର ଚରମ ସ୍ଥିତିକୁ) ଯିବା ପାଇଁ ପ୍ରସ୍ତୁତ ହୋଇଗଲେ । କାହିଁ କୌଣସି ରାୟବାହାଦୂରଙ୍କ କଲମରୁ ମାନବ ଜାତିର ପରିତ୍ରାଣ ପାଇଁ ଏପରି ଆଲେଖ୍ୟ କେଉଁଠାରେ ତ ଆମର ଦୃଷ୍ଟି ଗୋଚର ହେଲା ନାହିଁ ?

ଅବଶ୍ୟ ଜଣେ ଅଧେ ଭକ୍ତ କବିମାନେ ମହାରାଣୀ ଭିକ୍ଟୋରିଆମାନଙ୍କ ଜୟଗାନର କବିତା ଲେଖି ଅମର ହେଲେତ ରାୟବାହାଦୂରମାନେ ରାଜା, ମହାରାଜାଙ୍କୁ ନିଜ କାବ୍ୟ-କବିତା ପୁସ୍ତକ ଉତ୍ସର୍ଗ କରି ଆର୍ଥିକ ତଥା ସାମାଜିକ ସୁବିଧା ହାସଲ ପାଇଁ ତତ୍ପର ହେଲେ । ଏବେ ଯେପରି କିଛି ସଂଭ୍ରାନ୍ତ ସ୍ରଷ୍ଟା କେନ୍ଦ୍ର ବା ରାଜ୍ୟ ଏକାଡେମୀମାନଙ୍କ ପୁରସ୍କାର ପାଇବା ପାଇଁ କୌଣସି କୌଣସି ସାରସ୍ୱତ ସାମ୍ମୁଖ୍ୟ ବା କୌଣସି ସମ୍ବାଦପତ୍ରର ଜାତିଆଣବାଦୀ, ସାଂପ୍ରଦାୟିକବାଦୀ ସଂପାଦକମାନଙ୍କୁ କିମ୍ବା ସେମାନଙ୍କ ପିତା/ଶ୍ୱଶୁରମାନଙ୍କୁ ସମ୍ବର୍ଦ୍ଧିତ କରିବା ପାଇଁ ପ୍ରତିଯୋଗିତା କରୁଛନ୍ତି, ଭୀମ ଭୋଇଙ୍କ ସମୟରେ (ଅର୍ଥାତ୍ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ) ଆଜିର ଏଇ ତୋଷାମଦକାରୀ ପରମ୍ପରାର ମୂଳଦୁଆ ସ୍ଥାପନ କରାଯାଇଥିଲା ସାମ୍ରାଜ୍ୟବାଦୀ-ସାମନ୍ତବାଦୀ-ଜାତିଆଣବାଦୀ ସମାଜ ବ୍ୟବସ୍ଥା ଭିତରେ ।

କ୍ରାନ୍ତି ଦ୍ରଷ୍ଟା, ମହାନ୍ ସ୍ରଷ୍ଟା ଭୀମ ଭୋଇ ସେଇଥିପାଇଁ ନିଜ ସମୟଠାରୁ ଯଥେଷ୍ଟ ପୂର୍ବରୁ  ଜନ୍ମ ଗ୍ରହଣ କରିଥିଲେ । ତେଣୁ ତାଙ୍କୁ ରେଢାଖୋଲ ରାଜାଙ୍କ ଉଆସ ସାମ୍ନାରେ ବ୍ରାହ୍ମଣମାନଙ୍କ ପ୍ରରୋଚନାକ୍ରମେ ରାଜାଙ୍କ ଆଦେଶରେ ପ୍ରଚଣ୍ଡ ଗ୍ରୀଷ୍ମର ମଧ୍ୟାହ୍ନରେ ହରିକାଠାରେ ବନ୍ଧା ଯାଇ ବେତ୍ରାଘାତ କରାଯାଇଥିଲା ମୂର୍ତ୍ତିପୂଜାକୁ ନିନ୍ଦା କରୁଥିବା ମାନବଜାତିର ସମାନତା ସପକ୍ଷରେ ପ୍ରଚାର କରୁଥିବା, ବର୍ଣ୍ଣବ୍ୟବସ୍ଥା ବିରୁଦ୍ଧରେ ଜନଜାଗରଣ କରାଉଥିବା ଅପରାଧରେ । ତଥାପି ଭୀମଭୋଇ ବଜ୍ରକଣ୍ଠରେ ଘୋଷଣା କରିଥିଲେ- ''ଘଟରେ ବ୍ରହ୍ମକୁ ନଚିହ୍ନି/ବାହାରେ ଭ୍ରମୁଥାନ୍ତି ପ୍ରାଣୀ/ଚିତ୍ରପଟ୍ଟକୁ ନେତ୍ରେ ଦେଖି/ ମନ ଆନନ୍ଦେ ଭୋଇ ସୁଖୀ/ ଏଘଟେ ଜଗନ୍ନାଥ ଅଛି/ ପ୍ରତିମା ମିଛରେ ପୂଜୁଛି ।''

ନିଜେ ଦୀନ, ଦୁଃସ୍ଥ, ଦଳିତ, ସର୍ବହରା ହୋଇଥିଲେ ବି କ୍ରାନ୍ତିକାରୀ ପୁରୁଷ ସିଂହ ଭୀମ ଭୋଇ ନିଷ୍ପେସିତ ମଣିଷମାନଙ୍କ ପାଇଁ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପରାଧୀନ ଓଡ଼ିଶାର ପଶ୍ଚିମାଞ୍ଚଳରେ/ଚିନ୍ତା ଚେତନାର ସ୍ୱାଧୀନତା ପାଇଁ ପ୍ରଥମ ଆଲୋକ ବର୍ତ୍ତିକା ପ୍ରଜ୍ୱଳିତ କରିଥିଲେ ଏହି ମହାନ୍ ପଙ୍‌କ୍ତିମାନଙ୍କ ମଧ୍ୟରେ - ''ଗୁରୁଙ୍କ ଅର୍ଜିଲା ମେଦିନୀରେ ଅଛୁଁ, ନାହିଁ କଲା ଅଧିକାର/ଆମ୍ଭ ମନ ହେଲେ ଆମ୍ଭେ ସୁଖେ ଯିବୁ/ଦିଶିବ ଯେଉଁ ବିଚାର ।'' ପୃଥିବୀ ପୃଷ୍ଠରେ କେହି ସତ୍ତାଧିକାରୀ ନାହିଁ ଏବଂ ସମସ୍ତେ ସ୍ୱବିଚାରଧାରା ଧାରଣ କରିବାକୁ ସ୍ୱାଧୀନ-ଅନ୍ଧକାରମୟ ଯୁଗର ଜ୍ଞାନ ଦିହୁଡିଧାରୀ କ୍ରାନ୍ତିଦ୍ରଷ୍ଟା କବି ଓ ଦାର୍ଶନିକ ଭୀମ ଭୋଇଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ କେହି ଏପରି ଚିନ୍ତାଧାରା ବ୍ୟକ୍ତ କରିଛନ୍ତି କି ?

ଊନବିଂଶ ଶତାବ୍ଦୀର ସ୍ଥିତାବସ୍ଥାର ସମର୍ଥକ ରାୟବାହାଦୂରମାନେ ଆଧୁନିକତାର ଆଦ୍ୟ ପ୍ରବର୍ତ୍ତକ ବୋଲି ଏବର କତିପୟ ପ୍ରକ୍ରିୟାଶୀଳ ସଂଭ୍ରାନ୍ତମାନେ ଯେଉଁ ଅସ୍ଫୋଳନ କରୁଛନ୍ତି, ସେମାନେ କହନ୍ତୁ ତ, ଭୀମଭୋଇଙ୍କ ପରି ସେମାନଙ୍କର ଆଦର୍ଶ ସ୍ରଷ୍ଟାମାନେ ସେଇ ସମୟରେ ଏପରି ସାହସ ନିଜ ଲେଖନୀ ମାଧ୍ୟମରେ ପ୍ରଦର୍ଶନ କରି ପାରିଛନ୍ତି କି ? ସେଇଥିପାଇଁ ତ ଦଳିତର ପ୍ରାଣକର୍ତ୍ତା ଭୀମଭୋଇ ଘୋଷଣା କରିଛନ୍ତି– '' ମାୟାରେ ନପଡ ବେଦରେ ନବୁଡ/ ବୁଝ ବୁଝ ଭଲକରି/ଆପଣା ହେତୁରେ ଚେତାଇ ପାରିଲେ/କଳିରୁ ଯିବ ଉଦ୍ଧରି ।'' (ସ୍ତୁତି ଚିନ୍ତାମଣି, ଶତତମ ବୋଲେ)

ତତ୍କାଳୀନ ସମାଜରେ ସବର୍ଣ୍ଣ ଅସବର୍ଣ୍ଣ ଭେଦଭାବ ପରି ପୁରୁଷ ଓ ନାରୀ ଜାତି ମଧ୍ୟରେ ବି ଥିଲା ବାଛବିଚାର । ନାରୀର ସମାଜର କୌଣସି ବିଭବରେ ନଥିଲା ଅଧିକାର । ମନୁସ୍ମୃତି ଅନୁସାରେ ନାରୀ ବିବାହ ପୂର୍ବରୁ ପିତାର ଅଧିନା, ବିବାହ ପରେ ପତିର ଅଧିନା ଏବଂ ବିଧବା ହେବାପରେ ପୁତ୍ରର ଅଧିନା । ସମ୍ପତ୍ତି କଥା ଛାଡନ୍ତୁ, କୌଣସି ବିଷୟରେ ତା'ର ନଥିଲା ଅଧିକାର । ସେତେବେଳେ ନାରୀମୁକ୍ତି କଥା ଅକଳ୍ପନୀୟ ଥିଲା । ପାଶ୍ଚାତ୍ୟ ଦେଶମାନଙ୍କରେ ମଧ ନାରୀ ସମ୍ପୂର୍ଣ୍ଣ ସ୍ୱାଧୀନ ନଥିଲା । ନାରୀ ସେବେ ଦଳିତ ଥିଲା ଓ ଏବେବି ଅନେକାଂଶରେ ଦଳିତ ହୋଇ ରହିଅଛି । ସେହି ନାରୀ ଜାତିର ମୁକ୍ତିର କଥା ଘୋଷଣା କରି ମହାକବି ଭୀମଭୋଇ ଗାଇ ଉଠିଛନ୍ତି– '' ନିନ୍ଦାଗର୍ବମାନ ନରହିବ ଟାଣ/ କରୁଥିବ ସମଭାବ/ପୁରୁଷକୁ ନାରୀ ଜ୍ଞାନ ଶିଖାଇଲେ/ସତ୍ୟଯୁଗ ଲେଉଟିବ ।''

ହେ ବିଜ୍ଞମାନେ ! ରାୟବାହାଦୂରମାନେ ନାରୀ ମୁକ୍ତି କଥା କେଉଁଠି କହିଛନ୍ତି କି ? ବରଂ ପିତା ଦ୍ୱାରା ପୁତ୍ରୀ ଧର୍ଷିତା ହୋଇ ଗର୍ଭବତୀ ହୋଇଥିବାର ବର୍ଣ୍ଣନା ନିଜ କାବ୍ୟରେ କରି, ଆମ ଜାତୀୟ ସ୍ୱାଭିମାନକୁ ଭୂଲୁଂଠିତ କରିବାରେ କାର୍ପଣ୍ୟ ପ୍ରକାଶ କରିନାହାନ୍ତି ।

ଦଳିତର ତ୍ରାଣକର୍ତ୍ତା, ମହାନ୍ ମାନବବାଦୀ କ୍ରାନ୍ତିଦ୍ରଷ୍ଟା, ବିପ୍ଳବୀ ମହାକବି ଭୀମଭୋଇ ମାନବବାଦର ଜୟଗାନ କରି ପ୍ରଚଳିତ ଧର୍ମଧାରଣାକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ପୃଥିବୀର ସକଳମାନବ ଜାତିର ସମାନତାକୁ ଦୃଢ ଭାବେ ଉଦ୍‌ଘୋଷିତ କରି କହିଛନ୍ତି– '' ଧର୍ମ ପଛେ ନିନ୍ଦା ହେଉ/ଧରଣୀ ମଣ୍ଡଳ ରହୁ/ଶୂନ୍ୟ ଧରତୀ ଆକାଶ/ ଆକାଶ ଭାସି ନଯାଉ ।''

ସୁଧୀ ବୃନ୍ଦ ! ଆଧୁନିକତାର କିଏ ପ୍ରବର୍ତ୍ତକ ? କିଏ ମହାମାନବର ସାଗର ତୀରର ଦିଶା ନିର୍ଦ୍ଦେଶକ ?? ମହାକବି, ମହାବିପ୍ଳବୀ ଭୀମଭୋଇ ଦଳିତର ମହାଦାର୍ଶନିକ ଏବଂ ପରିତ୍ରାଣର ପଥ ପ୍ରଦର୍ଶକ, ଏଥିରେ ସନ୍ଦେହ ଅଛି ? ହାୟରେ ଦୁର୍ଭାଗା ଦେଶ, ହାୟରେ ଶୋଷଣବାଦୀ ସମାଜ ବ୍ୟବସ୍ଥା !! ହାୟରେ ସଂକୀର୍ଣ୍ଣ ଜାତିଆଣବାଦୀ ମଣିଷମାନେ !!! ଆଧୁନିକ ଓଡ଼ିଆ କାବ୍ୟଧାରାର ପ୍ରଥମ ଭୋଇଙ୍କୁ ସ୍ୱୀକାର କରିବାକୁ କୁଣ୍ଠିତ!!!

ହେଲେ ଆସନ୍ତାକାଲିର ସମାଜ ଭୀମଭୋଇଙ୍କୁ ଯୁଗଯୁଗ ପାଇଁ ମାନବ ଜାତିର ପରମ ଉଦ୍ଧାରକ, ଦାର୍ଶନିକ କବି ଭାବେ ନିଶ୍ଚୟ ସ୍ୱୀକାର କରିବ, ଏଥିରେ ସନ୍ଦେହ ନାହିଁ ଏବଂ ଏହା ମଧ ସନ୍ଦେହରୁ ଊର୍ଦ୍ଧ୍ୱରେ ଯେ, ଭୀମ ଭୋଇ ହିଁ ହେଉଛନ୍ତି ଆଧୁନିକ ଓଡ଼ିଆ କାବ୍ୟଧାରାର ପ୍ରଥମ ପ୍ରବର୍ତ୍ତକ ।

ଅମିନ୍ ହାଉସ୍, ଆଜମ୍‌ଖାନ ବଜାର,
କଟକ–୧



# ସମୟର ଝର୍କାରେ କବି ସଚ୍ଚି ରାଉତରାୟ

ଡକ୍ଟର ରଂଜିତା ନାୟକ

ନଦୀ ବା ପୁଷ୍କରିଣୀରେ କେବେହେଲେ ଉତ୍ତାଳ ଲହଡି ଉଠେ ନାହିଁ । ଲହଡି ଉଠେ ସମୁଦ୍ରରେ । କେବଳ ସମୁଦ୍ର ଗର୍ଜନ କରି ଚତୁର୍ଦ୍ଦିଗ ପ୍ରକମ୍ପିତ କରିପାରେ । ଆକାଶ ଓ ପୃଥିବୀର ଡାକକୁ ସେ କାନପାତି ଶୁଣେ । ସେମାନଙ୍କୁ କୋଳେଇ ନେବାର ସାମର୍ଥ୍ୟ କେବଳ ସମୁଦ୍ରର ଥାଏ । କାରଣ ସେ ସମୁଦ୍ର । ସୁତରାଂ ସମୁଦ୍ରକୁ ଚିହ୍ନିବାରେ ବା ଜାଣିବାରେ ଆଦୌ ବିଭ୍ରାନ୍ତି ଘଟେ ନାହିଁ । ସେହିଭଳି ଯେଉଁ କବି ମାଟିରେ ଠିଆ ହୋଇ ଆକାଶକୁ ଚାହିଁ ସ୍ପର୍ଦ୍ଧାର ସହିତ ଗାଇପାରେ:

''ମୁଁ ସଚ୍ଚି ରାଉତରା, ନୁହେଁ ଟାଗୋର ବା ସେଲି<br>
ମୁଁ ଏଇ ମାଟିର ଧରା ଆଉ ଆକାଶର କବି<br>
କାମ ନୁହେଁ ମୋ ଖାଲି ଆଙ୍କିବା କାଗଜର ଛବି<br>
ପେଶାଦାର ଗାୟକ ମୁଁ ନୁହେଁ<br>
ତୁମେ ମୋର ଛାପାବହି ଯେତେବେଳେ ଛୁଅଁ<br>
ଛୁଅଁ ନୂଆ ମଣିଷର ଛାତି<br>
ଏଇ ପୃଥିବୀର ସବୁ ମଣିଷ ଜାତି<br>
ତା'ର ପ୍ରତିଟି ଖବର<br>
ରୂପପାଏ କବିତାରେ ମୋର ।'' (ରାଜଜେମା)

ସେହି କାବ୍ୟପୁରୁଷ ତ କେବେହେଲେ ଅଚିହ୍ନା ହୋଇପାରେ ନାହିଁ । ଯେଉଁ କବିର ଆତ୍ମା ନିଜଠାରୁ ବାହାରିଯାଇ ନୂଆ ମଣିଷ ଦେହରେ ଖଞ୍ଜି ହୋଇଯାଇ ପାରେ, ସେତେବେଳେ ସେ ଆଉଜଣର ହୋଇ ରହେ ନାହିଁ । ସେ ହୋଇଯାଏ ଗଣର, ନୂଆ ମଣିଷର ଅର୍ଥାତ୍ ସାହିତ୍ୟ ଭିତରକୁ ଗତାଗତ ନଥିବା କୁଲି, ମଜୁରିଆ ଓ ମେହେନତୀ ମଣିଷମାନଙ୍କର । ସେ ହିଁ କେବଳ ପୀଡିତମାନବର ଛବି ଅଙ୍କନ କରିପାରେ । ସର୍ବହରା ଶୋଷିତ ଶ୍ରେଣୀକୁ ଜାଗ୍ରତ କରିବା ପାଇଁ ସେ ହିଁ କେବଳ ବିପ୍ଳବର ପାଞ୍ଚଜନ୍ୟ ବଜାଇପାରେ । କଳାର କୋଣାର୍କ ଭିତରେ ଯନ୍ତ୍ରଣାର ଶିଳାଲେଖକୁ ସେ ହିଁ ପଢି ଖେଦାକ୍ତ କଣ୍ଠରେ ଉଚ୍ଚାରଣ କରିପାରେ– ''କିଛି ତ କହିନି କଥା, କହିବାର ଯାହା ଥିଲା ।''

ଆଧୁନିକ କବିତାର ଉତ୍ତରଣ ପର୍ବରେ ଅନେକରେ ଏକ ହୋଇ ବାରିହୋଇ ପଡନ୍ତି କବି ସଚ୍ଚିଦାନନ୍ଦ ରାଉତରାୟ । କେମିତି ଅଲଗା ଲାଗେ ତାଙ୍କ ସ୍ୱର । ପାଠକ ମୁହଁଟେକି ଚାହେଁ, କିଏ ଆସୁଛି । ବୈପ୍ଳବିକ ଚିତ୍ତବୃତ୍ତି ଓ ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀର ସ୍ୱାକ୍ଷର ନେଇ ଆତ୍ମପ୍ରକାଶ କରେ 'ବାଜି ରାଉତ', 'ପଲ୍ଲିଶ୍ରୀ', 'ଭାନୁମତୀର ଦେଶ', 'ପାଣ୍ଡୁଲିପି', 'ସ୍ୱଗତ', 'ଅଭିଜ୍ଞାନ', 'ପାଥେୟ', 'ହସନ୍ତ', 'କବିତା ୧୯୬୨' ଆଦି କାବ୍ୟ ସଂକଳନ ।

ମାର୍କସ୍‌ଙ୍କ ସାମ୍ୟବାଦୀ ଦର୍ଶନ ଓ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ଦେଶର ମୁକ୍ତିସଂଗ୍ରାମଜନିତ ବୈପ୍ଳବିକ ଚିନ୍ତାଧାରା ତଥା ଯୁଗଚେତନାର ଯନ୍ତ୍ରଣାବୋଧ ସଫଳ ଶିଳ୍ପ ରୂପନିଏ ଏସବୁରେ । ଆଙ୍ଗିକ ଓ ଆତ୍ମିକ ଉଭୟ ଦିଗରେ ଏକ ନୂତନ କ୍ରାନ୍ତିକାରୀ ଶିଳ୍ପକଳାର ଭିତ୍ତିସ୍ଥାପିତ ହୁଏ, ଯାହା ଏଯାବତ୍ ଦିଗ୍‌ବାରେଣୀ ଭାବେ ଓଡ଼ିଆ କାବ୍ୟଜଗତକୁ ନିୟନ୍ତ୍ରିତ କରିଆସୁଛି।

କବି ରାଉତରାୟଙ୍କ କାବ୍ୟଜଗତ 'ପଲ୍ଲିଶ୍ରୀ'ରୁ 'ବାଜିରାଉତ', 'ପାଣ୍ଡୁଲିପି' ହେଉ ଏଯାବତ୍ ପରିବ୍ୟାପ୍ତ । ଦୀର୍ଘ ସାତ ଦଶନ୍ଧି ଧରି ଏକ ସୁବିସ୍ତୃତ ପଟ୍ଟଭୂମି ଉପରେ କାବ୍ୟ ପୁରୁଷର ପଦଯାତ୍ରା । କେତେ କଠିନ ସତେ ଏ ଯାତ୍ରା । କେତେବେଳେ ବଣଜଙ୍ଗଲର ଅନ୍ଧାରୁଆ ଅମଡା ବାଟ ତ କେତେବେଳେ ମରୁଭୂମିର ତତଲା ବାଲି ପୁଣି କେତେବେଳେ ଶସ୍ୟଶ୍ୟାମଳା ସମତଳ ଭୂଇଁ । କେତେବେଳେ ଝଡତୋଫାନର ମୁହାଁମୁହିଁ ତ କେତେବେଳେ ଝାଞ୍ଜିପବନର ଚାଇଁ ଆଉ କେତେବେଳେ ମୃଦୁମଳୟର କାଉଁରୀ ସ୍ପର୍ଶ । ପଥଧାରର କେତେ ଦୃଶ୍ୟ କେତେ ଘଟଣା ବେତନାସି

ପରି ଛନ୍ଦିହୋଇ ଯାଇଛି କାବ୍ୟ ପୁରୁଷର ମନରେ । ଲତାଟିକୁ ପବନ କେତେ ବାଗରେ ହଲେଇଲା ପରି ସମୟ ଓ ଘଟଣା ଭିନ୍ନ ଭିନ୍ନ ଭାବରେ ଚହଲେଇ ଦେଇଛି ପ୍ରାଣକୁ । ସ୍ରଷ୍ଟା ମାନସରେ ବିବିଧ ଭାବର ଅପୂର୍ବ ଆଲୋଡନ । କାବ୍ୟ ପୁରୁଷ କଣ୍ଠରେ ରାଗରାଗିଣୀ ରଞ୍ଜିତ ବିବିଧ ସ୍ୱର, ଯାହାର ମୂଳମନ୍ତ୍ର ମାନବବାଦ ।

'ପାଥେୟ' କାବ୍ୟଜଗତରେ କବିଙ୍କର ପ୍ରଥମ ଶିଳାନ୍ୟାସ ଓ ପରବର୍ତ୍ତୀ ପଥ ପାଇଁ ମାର୍ମିକ ମନ୍ତ୍ର ଉଚ୍ଚାରଣ । ରୋମାଣ୍ଟିକ୍ ରସଚେତନାରେ ଉଦ୍‌ବୁଦ୍ଧ କାବ୍ୟପୁରୁଷ ଗାଇଉଠିଛି–

''ଆଜି ହେମନ୍ତର ସ୍ୱର୍ଣ୍ଣ ସନ୍ଧ୍ୟା ଆସିଛି ଗଗନ ଛାଇ
ଗୋଷ୍ଠେ ଫେରଇ କ୍ଳାନ୍ତ ଗୋପାଳ ମଧୁର ମୁରଲୀ ବାଇ ।
ଆକାଶେ ଭାସଇ ସନ୍ଧ୍ୟାରାଣୀର ନବୀନ ଜୋଛନା ହାସ
ଅନିଳ ବହଇ ଅଙ୍ଗେ ଭରି ଯେ ହେନା ବକୁଳର ବାସ
ମଳିନ ମେଘର ତରଣୀ ବାହି ସେ ନୀଳ ଆକାଶ ତୀରେ
କିଏ ସେ ଫେରଇ କେଉଁ ଦୂରଦେଶେ କାହା ଅଭିସାର ଧୀରେ ?''

(ପାଥେୟ, ୩୪ ସନେଟ୍)

ଆକାଶର ମେଘ, ଜହ୍ନର ହସ, ବଉଳର ମହମହ ବାସ ଆଦି ପ୍ରକୃତିର ବିବିଧ ବିଭାବ ସହିତ କବି ଆତ୍ମା ଏକୀଭୂତ ହୋଇଉଠିଛି । ସବୁଜ ଯୁଗର ସ୍ୱପ୍ନ ବିଳାସୀ ମନ ନେଇ କାବ୍ୟପୁରୁଷ କଳ୍ପଲୋକରେ ବିଚରଣ କରିଛି । ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ବିନ୍ଦୁ ଭିତରେ ସିନ୍ଧୁ ଦର୍ଶନ କରି ପ୍ରକୃତି ଭିତରେ ଅନନ୍ତ, ଅବ୍ୟକ୍ତ ସତ୍ତାର ସନ୍ଧାନ କରିଛନ୍ତି ଏବଂ ନୈସର୍ଗିକ ଭାବବଳୟ ଭିତରେ ସେ ଉବୁଟୁବୁ ହୋଇଛନ୍ତି । ମାତ୍ର କବି ସଚ୍ଚି ରାଉତରାୟଙ୍କ ଲେଖନୀ ମୁନରେ ପ୍ରକୃତି ନିଜ ଭାବ ବିଳାସର ଭୂମି ହୋଇଛି । ସୀମିତ ପରିସର ଭିତରେ ପ୍ରକୃତି ଆତଯାତ ହୋଇଛି ।

ରୋମାଣ୍ଟିକ୍ ଚେତନା ଓ ବାସ୍ତବବାଦୀ ଚେତନାର ଫେଣ୍ଟାଫେଣ୍ଟି ଭାବ 'ପଲ୍ଲିଶ୍ରୀ'ରେ ଉତ୍‌କୀର୍ଣ୍ଣ । ଏହାର ପୃଷ୍ଠଭୂମି ପଲ୍ଲୀ ହେଲେ ମଧ୍ୟ ପାରମ୍ପରିକ ରୂପବ୍ୟତୀତ ପଲ୍ଲୀ ଜୀବନର ଏକ ନୂତନ ରୂପ ଏଥିରେ ପ୍ରକଟିତ । ପଲ୍ଲୀକବି ନନ୍ଦକିଶୋର ପଲ୍ଲୀର ଶାନ୍ତସୁନ୍ଦର କମନୀୟ ଚିତ୍ର ପ୍ରଦାନ କରିଥିବା ବେଳେ ପଲ୍ଲୀ ଜୀବନର ଜଟିଳତା ଓ ଅବକ୍ଷୟ ଦିଗ କବି ରାଉତରାୟଙ୍କ ତୀକ୍ଷ୍ଣ ଦୃଷ୍ଟିରୁ ବାଦ୍ ଯାଉନି । ଅଲିଭର୍ ଗୋଲ୍‌ଡସ୍ମିଥ୍ ତାଙ୍କ କବିତା ଗ୍ରନ୍ଥରେ ଶିଳ୍ପ ସଭ୍ୟତାର ବିକାଶକୁ ପଲ୍ଲୀ ପ୍ରକୃତି ତଥା ପଲ୍ଲୀ ଜୀବନର ଅବକ୍ଷୟର କାରଣ ରୂପେ ଗ୍ରହଣ କରିଥିବା ପରି କବି ସଚ୍ଚି ରାଉତରାୟ ଜମିଦାର ଓ ସାମ୍ରାଜ୍ୟବାଦୀ ଶାସନକୁ ସରସ ପଲ୍ଲୀ ଜୀବନର ପାଂଶୁଳତାର କାରଣ ବୋଲି ବୟାନ କରିଛନ୍ତି । କବିଙ୍କ ଭାଷାରେ – ''ଓଡ଼ିଶାର ପଲ୍ଲୀ ଜୀବନର ସୌନ୍ଦର୍ଯ୍ୟ, ସ୍ୱବିରୋଧ ଓ ବ୍ୟକ୍ତିତ୍ୱବୋଧକୁ ନେଇ 'ପଲ୍ଲିଶ୍ରୀ' ରଚିତ ।''

କବି ପଲ୍ଲୀକୁ ପ୍ରାଣଭରି ଭଲ ପାଇଛନ୍ତି । ଏପରିକି ପଲ୍ଲୀର ଆଲୁଅ ଓ ଅନ୍ଧାର କବିଙ୍କୁ ନୂତନ ଜୀବନର ସନ୍ଧାନ ଦେଇଛି ।

''ଆଲୁଅ ତାର କି ମନୋହର
ଅନ୍ଧକାର ତା'ଠାରୁ ଭଲ
ଜୀବନପଥେ ସକଳତାର
ଫିଟାଏ ନୂଆ ରାହାଟି
ଛୋଟ ମୋର ଗାଆଁଟି ।''

ପଲ୍ଲୀର ତୋଟାମାଳ, ନଦୀ, ପୁଷ୍କରିଣୀ, ଧୂଳିମାଟିର ଗାଁ ଦାଣ୍ଡ, ପଲ୍ଲୀବଧୂର ଅଳସ ଚାଲି, ଗୋଷ୍ଠବାହୁଡା ଧେନୁପଲର ଦୃଶ୍ୟ, ପଲ୍ଲୀର ସଞ୍ଜ, ସକାଳ ସବୁକିଛି କବି ଦୃଷ୍ଟିରେ ସ୍ୱପ୍ନପୁରୀର ମାୟାଞ୍ଜନ ବୋଲି ଦେଇଛି । ଏପରିକି ଗାଁ ମୁଣ୍ଡର ପରିତ୍ୟକ୍ତ ଶ୍ମଶାନ ପାଦରେ କବି ପ୍ରଣତି ବାଢିଛନ୍ତି । ଶ୍ମଶାନ ହିଁ ଗ୍ରାମର ଶେଷ ପରିଣତି । ସେ ପ୍ରଶାନ୍ତ, ଉଦାର ଓ ମହାନ । ତା'ର ମାନ, ଅଭିମାନ ନାହିଁ, ଅହଙ୍କାର ନାହିଁ । ସେହି ଶ୍ମଶାନ କବି ଦୃଷ୍ଟିରେ ପବିତ୍ର ସ୍ଥାନ, ପୁଣ୍ୟଭୂମି । ଦୃଷ୍ଟିଶକ୍ତି ଦିଗ୍‌ବଳୟକୁ ଅତିକ୍ରମି ନ ପାରିଲେ ପ୍ରାଣରେ ଏପରି ଚିନ୍ତାଧାରାର ଉଦ୍ରେକ ଘଟିବା ଏକାନ୍ତ ଅସମ୍ଭବ ।

ପଲ୍ଲୀର ବାହ୍ୟଦୃଶ୍ୟ ସହିତ ସାମାଜିକ ଜୀବନର ବିପର୍ଯ୍ୟୟ, ଦୁଃଖ, ଯନ୍ତ୍ରଣା, ହସଖୁସି ଓ ଧର୍ମବିଶ୍ୱାସ ଆଦି ସାଧାରଣ ଜନତାଙ୍କ ଜୀବନଚିତ୍ର ଅତ୍ୟନ୍ତ କଳାକୁଶଳତାର ସହ ସେ ଅଙ୍କନ କରିଛନ୍ତି । 'ଜମିଦାରଙ୍କ ଷଣ୍ଢ', 'ଛୋଟ ମୋର ଗାଆଁଟି', 'ରେଙ୍ଗୁନ୍ ଯାତ୍ରୀ' ଆଦି କବିତାରେ ଜନତାର ଦାରିଦ୍ର୍ୟଜନିତ ଦୁଃଖ, ହାତାଶା ଓ ନୈରାଶ୍ୟ ଭାବ ପ୍ରକଟିତ । ଏତେ ଯନ୍ତ୍ରଣା ଭିତରେ ମଣିଷ ମନରେ ତଥାପି ଜୁକୁଜୁକୁ ହୋଇ ଜଳୁଚି ତା'ର ଧର୍ମବିଶ୍ୱାସ, ତା'ର ମାନବିକତା । ଜମିଦାରଙ୍କ ଷଣ୍ଢ ଗରିବ ଚାଷୀର ସମସ୍ତ ସ୍ୱପ୍ନକୁ ଉଜାଡି ଦେଇଥିଲେ ମଧ୍ୟ ସେ ତାକୁ ବାଡି ଉଞ୍ଚାଇ ନାହିଁ, ବରଂ ସବୁ ଦୁଃଖକୁ ନିଜର ଭାଗ୍ୟ ବୋଲି ଧରିନେଇ ସାନ୍ତ୍ୱନା ପାଇଛି । କେବଳ ସାମାଜିକ ନୀତିନିୟମ, ବ୍ୟାଧି ବୈଷମ୍ୟ ନୁହେଁ, ମଣିଷର ମନସ୍ତତ୍ତ୍ୱକୁ ମଧ୍ୟ ସେ ଅଧ୍ୟୟନ କରିଛନ୍ତି । 'ବାପା ବାପା ପକାଇଲା ହୁରି' କବିତାଟି ଏହାର ଏକ ସୁନ୍ଦର ଉଦାହରଣ । 'ପହିଲି ରଜ',

'ଶିବପୂଜା', 'ମୁଁ ତ ଭ୍ରଥ ନାହାକ ଝୁଅ', 'ଭୂତଛଡା' ଆଦି କବିତାଗୁଡିକ ପଲ୍ଲୀ ଜୀବନର ବହୁମୁଖୀ ଦିଗ ଉନ୍ମୋଚିତ କରିଛି । ସର୍ବୋପରି କବି ପଲ୍ଲୀର ଜୀବନନାଟିକା ସହିତ ଜଡିତ ହୋ ତାର ନିଃସର୍ଗ ଆତ୍ମାକୁ ଚିହ୍ନି ଚିହ୍ନାଇବାର ଯେଉଁ ପ୍ରୟାସ କରିଛନ୍ତି, ତାହା ବାସ୍ତବିକ୍ ହୃଦ୍ୟ । ପରେ ପରେ କବି ରାଉତରାୟଙ୍କ କାବ୍ୟସ୍ୱରରେ ଯେଉଁ ବିପ୍ଳବୀର ପରିବର୍ତ୍ତନ ସଙ୍ଗଠିତ ହୋଇଛି ତାହା 'ପଲ୍ଲିଶ୍ରୀ'ର ପୃଷ୍ଠପୀଠିକା ଉପରେ ଆଧାରିତ ବୋଲି କୁହାଯାଇପାରେ ।

ଗୋଟିଏ ସମୟର ରାଜନୀତି ତତ୍କାଳୀନ ସମାଜକୁ ନିୟନ୍ତ୍ରିତ କରିଥାଏ । ଏହି ଦୃଷ୍ଟିରୁ ୧୯୩୫-୩୬ ମସିହାର ସାମ୍ୟବାଦୀ ଚେତନା ଭାରତର ରାଜନୀତି ତଥା ସମାଜରେ ଏକ ଆଲୋଡନ ସୃଷ୍ଟି କରିଛି । ସାହିତ୍ୟ ରାଜ୍ୟରେ ପ୍ରଗତିଶୀଳ ଆନ୍ଦୋଳନ ପ୍ରବର୍ତ୍ତନ କରିବାର ଆଭିମୁଖ୍ୟ ନେଇ ଗଠିତ ହୋଇଛି । 'ନବଯୁଗ ସାହିତ୍ୟ ସଂସଦ' । ଏହାର ମୁଖପତ୍ର 'ଆଧୁନିକ' ପ୍ରକାଶ ପାଇବା ପରେ ସାହିତ୍ୟ କ୍ଷେତ୍ରରେ ଓ ଜନଜୀବନରେ ମଧ୍ୟ ଏକ ନବ ଚେତନାର ସ୍ରୋତ ଉପଲବ୍ଧ ହେଲା । 'ଆଧୁନିକ' ବିପ୍ଳବର ତୂର୍ଯ୍ୟନାଦ କଲା । ' କଳା ପାଇଁ କଳା' ନୁହେଁ, 'ଜୀବନ ପାଇଁ କଳା'ର ସେ ସ୍ଲୋଗାନ ଦେଲା ଏବଂ ଏହି ଉଦ୍ଦେଶ୍ୟକୁ ଜନସାଧାରଣଙ୍କ ନିକଟରେ ପହଞ୍ଚାଇବାକୁ ସେ ସତତ ଚେଷ୍ଟିତ ହେଲା ।

ଗଣ ଅଭିମୁଖୀ ଅନୁଚିନ୍ତା ହେଲା ପ୍ରଗତିଶୀଳ ସାହିତ୍ୟର ମୁଖ୍ୟସ୍ୱର । ସେଥିପାଇଁ ସାହିତ୍ୟ ଦରବାରକୁ ପୂର୍ବରୁ ପ୍ରବେଶ କରିନଥିବା ଖଟିଖିଆ ଦିନ ମଜୁରିଆ, ସର୍ବହରା ଗୋଷ୍ଠୀ ଓ ସାଧାରଣ ଜନତା କ୍ରମେ ନିଜର ସ୍ଥିତି ଓ ଅଧିକାର ସମ୍ପର୍କରେ ସଚେତନ ହେଲେ । ଏହି ପ୍ରଗତିଶୀଳ ଚିନ୍ତାଧାରା ବିରୋଧରେ ପାରମ୍ପରିକ ସମାଜର ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀ ଯେଉଁ ପ୍ରତିକ୍ରିୟା ସୃଷ୍ଟିକଲା, ତାର ପ୍ରତିବାଦ କଲା ପ୍ରଗତିଶୀଳ ସାହିତ୍ୟ । ପ୍ରଗତିବାଦୀ ଲେଖକ ମନରେ ସାମ୍ୟବାଦୀ ଆନ୍ଦୋଳନ ନୂତନ ଉତ୍ତେଜନା ସୃଷ୍ଟିକଲା । ମଣିଷ ପ୍ରତି ଅକୃତ୍ରିମ ଭଲପାଇବା ହେତୁ ସର୍ବହରା ଓ ଶୋଷିତ ଶ୍ରେଣୀକୁ ଜାଗ୍ରତ କରିବା ପାଇଁ ସେମାନେ ବିପ୍ଳବର ବାଣୀ ଶୁଣାଇଲେ ।

କବି ସଚ୍ଚିଦାନନ୍ଦ ରାଉତରାୟ ମାନବବାଦୀ ଶିଳ୍ପୀ, ମଣିଷର ଲୁହ ଲହୁଭରା ଜୀବନର କଥା କହୁଥିବା ଦରଦୀ କବି । ଏଇ ଧୂଳି ଧୂସରିତ ଧରଣୀର ଖଟିଖିଆ, ମଜୁରିଆ ସର୍ବହରା ଗୋଷ୍ଠୀକୁ ସେ ପ୍ରାଣଭରି ଭଲ ପାଇଛନ୍ତି, ସେମାନଙ୍କ ସହିତ ଏକାତ୍ମ ହୋଇଛନ୍ତି । ସେମାନଙ୍କ ଦୁଃଖ ଯନ୍ତ୍ରଣାକୁ ନିଜେ ଅନୁଭବ କରିଛନ୍ତି । ସୁତରାଂ ତାଙ୍କ କାବ୍ୟମାନସ ସପନର ନୀଳ ଢେଉରେ ଭାସି ଭାସି ବାସ୍ତବତା ଠାରୁ ଦୂରେଇ ଯାଇନାହିଁ, ବରଂ ବାସ୍ତବତାର ମୁହାଁମୁହିଁ ହେବା ପରେ ସେ ପସନ୍ଦ କରିଛନ୍ତି । ସେଥିପାଇଁ ପଳାୟନପନ୍ଥୀ ସବୁଜଗୋଷ୍ଠୀକୁ ସମ୍ବୋଧନ କରି ସେ କହନ୍ତି–

''ଆରେ ଆରେ ପଳାୟନପନ୍ଥୀ<br>
ପଳାଇବାକୁ ଆଜି କାହିଁ ଛିନ୍ନକରି ଏ ଧରଣୀ ଗ୍ରନ୍ଥି ?<br>
ଲୁଚିବୁ ବା କାହିଁ ?<br>
ମୃତ୍ତିକାର ଏତେ ଦାବି ପାରିବୁକି ଆଜି ତୁ କଟାଇ !<br>
କାହିଁ ଭୀରୁ ନେବୁରେ ଆଶ୍ରୟ<br>
ତୋର ସେହି କୁଞ୍ଜବନ ଦେଇକିରେ ପାରିବ ଅଭୟ ?

(ବାଜି ରାଉତ)

'ଜନସାଧାରଣଙ୍କ ସାହିତ୍ୟ' ପ୍ରବନ୍ଧରେ କବି ପ୍ରକାଶ କରିଛନ୍ତି ଭାବ ପ୍ରବଣତା ଓ ମଧ୍ୟମଶ୍ରେଣୀ ସୁଲଭ ପ୍ରବଣତାର ତାଡନାରେ ବର୍ତ୍ତମାନ ଲେଖକମାନେ ସାହିତ୍ୟ ସୃଷ୍ଟି କରୁଥିବାରୁ ସାହିତ୍ୟ ବାସ୍ତବ ଜୀବନଠାରୁ ସାମଞ୍ଜସ୍ୟ ହରାଇଛି । ଜୀବନ ସଂଗ୍ରାମର ସମ୍ମୁଖୀନ ହେବା ପାଇଁ ଯେଉଁ ସାହସ ଦରକାର, ତା' ଏ ସାହିତ୍ୟରେ ନାହିଁ । ଏହା ପଳାୟନତତ୍ପର ଭୀରୁ ସାହିତ୍ୟ । ସାହିତ୍ୟ ସମସାମୟିକ ଆର୍ଥନୀତିକ ଅବସ୍ଥା ଦ୍ୱାରା ନିର୍ଣ୍ଣିତ ହେବାକୁ ବାଧ୍ୟ । କାରଣ ଅନ୍ୟାନ୍ୟ ଜିନିଷ ପରି ସାହିତ୍ୟ ମଧ୍ୟ ଆର୍ଥନୀତିକ ଶକ୍ତିର ସମନ୍ୱୟରୁ ଉଦ୍‌ଭବ । ବର୍ତ୍ତମାନ ଗୋଟିଏ ଆଡେ ଉତ୍ପାଦକ ଶ୍ରେଣୀ ଓ ଅନ୍ୟ ଆଡେ ଶୋଷକ ବୁର୍ଜୁଆଗଣ । ଏହି ଶ୍ରେଣୀୟ ସଂଘର୍ଷ ଆର୍ଥନୀତିକ ଜଗତରେ ଯେପରି ସତ୍ୟ, ଚିନ୍ତାଜଗତରେ ମଧ୍ୟ ସେହିପରି ସତ୍ୟ । ସାହିତ୍ୟ ଏହି ଶ୍ରେଣୀୟ ସଂଘର୍ଷରେ ଯଦି ଜନସାଧାରଣଙ୍କୁ ସାହାଯ୍ୟ ନକରେ, ତେବ ତାହାର କୌଣସି ମୂଲ୍ୟ ନାହିଁ । ସେଥିପାଇଁ ଜନସାଧାରଣଙ୍କ ସାହିତ୍ୟ ପୂର୍ଣ୍ଣଭାବରେ ହେବ– (ସହକାର, ଜୁଲାଇ ୧୯୩୭)

କବି ରାଉତରାୟଙ୍କ ଏହି ଚିନ୍ତାଧାରାର ପରିପ୍ରକାଶ ଘଟିଛି 'ମାଟିର ପତଙ୍ଗ', 'ଖାଦ୍ୟ', 'ସହରତଳିର ଉଷା' ଆଦି ଅନେକ କବିତାରେ । ଦୀନ ଦରିଦ୍ର ଅବହେଳିତ ଜନସାଧାରଣ କବି ଦୃଷ୍ଟିରେ ମାଟିର ପତଙ୍ଗ ପରି ଅଛି ନାହିଁର ଜୀବନ । ସର୍ବଦା ଦୁର୍ବଳ ଉପରେ ସବଳର ଅତ୍ୟାଚାର । ଏହି ନିଷ୍ପେସିତ ଜନସାଧାରଣ ତାର ମୌଳିକ ଚାହିଦା ମେଣ୍ଟାଇବା ପାଇଁ ଅକ୍ଷମ, ଅଥଚ ଶୋଷକ ଗୋଷ୍ଠୀ ଏମାନଙ୍କର ସମସ୍ତ ସୁଖସ୍ୱପ୍ନ ଉଜାଡି ରକ୍ତଶୋଷଣ କରିବାକୁ ପଶ୍ଚାତ୍‌ପଦ ହୁଏନା । ହେଲେ କବି ଜାଣନ୍ତି ସବୁଦିନେ

ଏ ଅମା ଅନ୍ଧକାର ରହିବ ନାହିଁ । ଦିନେ ନା ଦିନେ ଅପସରି ଯିବ । ନୂତନ ସୂର୍ଯ୍ୟୋଦୟ ଘଟିବ ହିଁ ଘଟିବ । ଖଟିଖିଆ ଶ୍ରମିକଗୋଷ୍ଠୀର ଜୟ ହେବ । ସେହି ନୂତନ ସୂର୍ଯ୍ୟ ପାଇଁ ସହରତଳିର ମଣିଷ ପ୍ରତୀକ୍ଷା କରେ । ପ୍ରଭାତର ଅରୁଣିମା ବା ସଂଜର ଜହ୍ନ ଆଲୁଅ ପାଇଁ ସେ ସତୃଷ୍ଣ ନୟନରେ ଚାହିଁ ରହେ । ହେଲେ ସେସବୁ ଯେ ଧନିକଗୋଷ୍ଠୀ ପାଇଁ ଉଦ୍ଦିଷ୍ଟ ! ସାଧାରଣ ଜନତା ତାକୁ ଉପଭୋଗ କରିପାରେ ନାହିଁ । ତା ଜୀବନରେ ସ୍ୱପ୍ନ ସୁଦୂର ପରାହତ । ଏହି ଆର୍ଥନୀତିକ ବିରୋଧାଭାସ ଉପରେ ପ୍ରତିଷ୍ଠିତ ସମାଜକୁ ସନ୍ଦର୍ଶନ କରି କାବ୍ୟପୁରୁଷ ମର୍ମାହତ । ସେଥିପାଇଁ ଜଗତର ଧୂଳି ଧୂସର ପଥପ୍ରାନ୍ତରେ ଜୀବନର ସାମସଙ୍ଗୀତ ଗାଇବାକୁ ଆଗେଇ ଆଣିଛନ୍ତି କବି । ବୈଷମ୍ୟ ଓ ବିଭେଦର ପ୍ରାଚୀରକୁ ଭାଙ୍ଗିଦେବା ଉଦ୍ଦେଶ୍ୟରେ ସମଗ୍ର ପୃଥିବୀର ଶ୍ରମିକ ସର୍ବହରାଗୋଷ୍ଠୀକୁ ଏକଜୁଟ ହେବା ପାଇଁ କାବ୍ୟପୁରୁଷ ଆହ୍ୱାନ କରି କହିଛି–

''ପୃଥିବୀରେ ସର୍ବତ୍ର ତୁମେ ରହିଛ
ତୁମରି ସତ୍ତା ସବୁ ଦେଶ,
ସବୁ ଭୌଗୋଳିକ ସୀମାର ବାହାରେ ପରିବ୍ୟାପ୍ତ
ହେ ପୃଥିବୀର ସର୍ବହରା ଶ୍ରମିକ ! ଏକଜୁଟ ହୁଅ
ହେ ଆହତ ଆତ୍ମା ! ସଚେତ ହୁଅ
ତୁମର ଶ୍ରେଣୀ ଚେତନା ତୁମକୁ ଅପେକ୍ଷା କରିଛି ।''
(ମୂଲିଆଭାଇ)

ମଣିଷକୁ ନିବିଡଭାବେ ଭଲପାଇଥିବା ହେତୁ ସମଗ୍ର ପୃଥିବୀ ସମ୍ମୁଖରେ ପୀଡିତମାନଙ୍କର ଛବିକୁ ଦର୍ଶାଇବାକୁ ସେ ଉଦ୍‌ଗ୍ରୀବ ହୋଇଛନ୍ତି । ସେହି ଉତ୍କଣ୍ଠାରୁ ପୀଡିତପ୍ରାଣର ଜୈତ୍ରଗାଥା ଗାଇ ସୃଷ୍ଟି ହୋଇଛି ସର୍ବହରା, ଭାତ, ଫାଶିକାଠ, କାରାଗାର, ହାତୁଡି, ମୂଲିଆଭାଇ, ଜୀବନର ପଥେ, ବନ୍ଦୀ, କୋଣାର୍କ ଆଦି କବିତାସମୂହ । ମଣିଷଗଢା ନିୟମ ବେଦୀରେ ମଣିଷ ବଳି ପଡୁଥିବା ବେଳେ କୋଣାର୍କର କଳାର ଫସଲ ତାକୁ ଆକୃଷ୍ଟ କରି ପାରିନାହିଁ । ସେଠି ସାଧାରଣ ଜୀବନର ଅନୁପସ୍ଥିତିକୁ କାବ୍ୟପୁରୁଷ ମର୍ମେ ମର୍ମେ ଅନୁଭବ କରିଛି । ସେଠି ଅଶ୍ରୁ ନାହିଁ କି ସ୍ୱେଦ ନାହିଁ। ଅହରହ ସଂଗ୍ରାମରତ ଶିଳ୍ପୀର ଜୀବନବେଦ ସେଠି ଉଚ୍ଚାରିତ ହୋଇନାହିଁ କି ନିଷ୍ଠୁର ବାସ୍ତବତାର ରୁକ୍ଷ କର୍କଶ ରୂପ ସେଠି ଅଙ୍କିତ ହୋଇନାହିଁ । ସେଠି ଅଛି ଖିଆଲି ମନର ଅସରନ୍ତି ସ୍ୱପ୍ନ । ସେଥିପାଇଁ କଳାର କୋଣାର୍କ ତାଙ୍କୁ ଶ୍ମଶାନ ପରି ପ୍ରତୀୟମାନ ହୋଇଛି । ଅସରନ୍ତି ଦୁଃଖ, ଅପମାନ ଓ ନୈରାଶ୍ୟରେ ଭାଙ୍ଗିପଡିଛି ମନ । ଆହତ ଆତ୍ମା ପ୍ରକାଶ କରିଛି–

''ଅମର ହୋଇବ କାଳର କବଳେ
ଯେଣୁ ଜଣକର ନାମ
ଲକ୍ଷବେନାମୀ ଜୀବନରେ ତେଣୁ
ଗଢାହେଲା ଶମଶାନ ।(କୋଣାର୍କ)

କାବ୍ୟପୁରୁଷର ଏ ସ୍ୱର ବେଶ୍ ପ୍ରାଞ୍ଜଳ, ଶକ୍ତିଶାଳୀ ଓ ଉଦ୍ଦେଶ୍ୟମୂଳକ । ତଥାକଥିତ ଧର୍ମବ୍ୟବସ୍ଥାକୁ କବି ବିଦ୍ରୂପ କରିଛନ୍ତି । ତାହା ଥିଲାବାଲାଙ୍କର ଏକ ମୁଖା । ଧର୍ମର ମଦ ଖୁଆଇ ଯୁଗଯୁଗ ଧରି ନିଃସ୍ୱ ନିଦରଣୀ ମଣିଷକୁ ଧନିକ ଶୋଷଣ କରେ । ନିର୍ଦ୍ଧନର ଜୀବନଫୁଲ ଧୂଳି ଧୂସରିତ ହୋଇ ଭୂଇଁରେ ଲୋଟେ । ସରଳ ନିଷ୍କପଟ ନିଦରବୀ ଜନତା ତାହାକୁ ତାର ଭାଗ୍ୟ ବୋଲି ବିଶ୍ୱାସ କରେ । ଭଗବାନଙ୍କୁ ଭରସା କରି ସବୁ ଅତ୍ୟାଚାର ସେ ମୁଣ୍ଡପାତି ସହିଯାଏ । ସହିବା ବ୍ୟତୀତ ତାର ଅନ୍ୟଗତି ହିଁ ନଥାଏ । ସେଥିପାଇଁ ପୁଞ୍ଜିପତି ଓ ଭଗବାନଙ୍କ ବିରୋଧରେ ବିଦ୍ରୋହ କରି ଉଠିଛି କବି ଆତ୍ମା–

''ଚୁରିବାକୁ ହେଲେ ଧନୀର ବି ଧନ
ରକ୍ତ ତୁମର ଲୋଡା ଭଗବାନ
ତମରି କବର ଧନୀର କବର
ମରଣ ତମର ଚାହିଁ
ଭଗବାନ ଅଛ କାହିଁ ?''

ଶ୍ରେଣୀହୀନ ସମାଜ ଗଠନ କରିବାକୁ ହେଲେ ଭାଗ୍ୟ, ଧର୍ମ ଓ ଭଗବତ ବିଶ୍ୱାସକୁ ସମ୍ପୂର୍ଣ୍ଣରୂପେ ଅସ୍ୱୀକାର କରିବାକୁ ହେବ– ଏହା ଉତ୍ତମରୂପେ ବୁଝିଥିଲେ କବି । ଏହା ବ୍ୟତୀତ ସମାଜର ଅର୍ଥନୈତିକ ବ୍ୟବସ୍ଥା ଯାହା ଜଣକୁ ଧନୀ ଓ ଅନ୍ୟ ଜଣକୁ ନିର୍ଦ୍ଧନ ବୋଲି ମଣିଷ ଦେହରେ ଛାପାମାରେ, ଯାହା ସମସ୍ତ ସାମାଜିକ ବିଶୃଙ୍ଖଳାର ମୂଳହେତୁ, ସେହି ବ୍ୟବସ୍ଥାକୁ ଭାଙ୍ଗିରୁଜି ଦେବା ପାଇଁ କାବ୍ୟ ପୁରୁଷ ଆହ୍ୱାନ କରିଛି ।

'ବାଜିରାଉତ' କାବ୍ୟ ହିଁ କବିଙ୍କ ବୈପ୍ଳବିକ ଚିନ୍ତାର ଶ୍ରେଷ୍ଠ ନିଦର୍ଶନ । ଢେଙ୍କାନାଳ ନୀଳକଣ୍ଠପୁରର ବାରବର୍ଷର ବାଳୁତ ବାଜିରାଉତ, ଇଂରେଜ ଫଉଜଙ୍କ ଗୁଳିଚୋଟରେ ମୃତ । କଟକର ଖାନନଗର ମଶାଣିରେ ଜଳି ଉଠିଛି ତା'ର ଜୁଇ । ସେହି ଜୁଇ ନିକଟରେ ଦଣ୍ଡାୟମାନ କବିଙ୍କ ମନରେ ଅନେକ ଭାବାନ୍ତର । ଲହଲହ ଅଗ୍ନିଶିଖାକୁ ଚାହିଁ ପ୍ରତିକ୍ରିୟାଶୀଳ ପ୍ରାଣ ଗାଇ ଉଠିଛି–

''ନୁହେଁ ବନ୍ଧୁ ନୁହେଁ ଏହା ଚିତା
ଏ ଦେଶ ତିମିର ତଳେ
ଏ ଅଲିଭା ମୁକତି ସଳିତା
ନୁହେଁ ଏହା ଜଳିଯିବା ପାଇଁ
ଏହାର ଜନମ ଏଥି
ଜାଳିପୋଡି ଦେବାକୁ ଧସାଇ ।''(ବାଜି ରାଉତ)

ଅତୀତର ବାରୋଟି ଫାଲ୍‌ଗୁନ ନିଆଁରେ ଶୁଷ୍କ ତୃଣଭଳି ଜଳିପୋଡି ଯିବାବେଳେ କବିଙ୍କର ନିଦ୍ରାଭଙ୍ଗ ଘଟିଛି। ମନରେ ଆଶଙ୍କା ବା ଭୟ ନାହିଁ । ପରିସ୍ଥିତିକୁ ଦୃଢଭାବରେ ସମ୍ଭାଳି ନେବାକୁ ସେ ଆଗେଇ ଆସିଛନ୍ତି । ପୁଣି ଦିନେ ବସନ୍ତର ଚିର ଅଭ୍ୟୁଦୟ ଘଟିବ ବୋଲି ସେ ଆଶା ବାନ୍ଧିଛନ୍ତି । ବାସ୍ତବିକ ବାଜିରାଉତ ଏକ ଅଗ୍ନିସ୍ଫୁଲିଙ୍ଗ । ଝୋଟରେ ନିଆଁ ଲଗାଇଦେବାର ଅନୁଭବ । ବିଦ୍ରୋହର ଚୂଡାନ୍ତ ଅଭିବ୍ୟକ୍ତି ।

ପ୍ରଗତିଶୀଳ କାବ୍ୟଚେତନା ପ୍ରଳୟଙ୍କରୀ ବିଶ୍ୱଯୁଦ୍ଧରେ ଆହତ ଓ କ୍ଷତବିକ୍ଷତ ହୋଇଥିଲେ ମଧ୍ୟ 'ପାଣ୍ଡୁଲିପି'ର ଅଧିକାଂଶ କବିତାରେ ଏହି ବିପ୍ଳବୀ ସମାଜବାଦୀ ଚିନ୍ତନକୁ ବେଶ୍ ଅନୁଭବୀ ହୁଏ । ଯୁଦ୍ଧ ପରବର୍ତ୍ତୀ ଆହତ ମଣିଷ ଓ ତା'ର ପୁନଶ୍ଚ ବଞ୍ଚିବା ପାଇଁ ଅବିରତ ସଂଗ୍ରାମର ଚିତ୍ର ସହିତ ମଣିଷ ପ୍ରତି ଶ୍ରଦ୍ଧା, ସହାନୁଭୂତି ତଥା ସମାଜରେ ଶାନ୍ତି ପ୍ରତିଷ୍ଠା ପାଇଁ ଆତୁରଭାବ ବେଶ୍ କଳାକୁଶଳତାର ସହିତ ଏଥିରେ ପ୍ରକଟିତ । ଅଧ୍ୟାପକ ଚିନ୍ତାମଣି ବେହେରାଙ୍କ ଭାଷାରେ ''ଆଧୁନିକ ଜୀବନର ସମସ୍ତ ଦ୍ୱନ୍ଦ୍ୱ, ସଂଘର୍ଷ, ଜଟିଳତା ଓ ବିଫଳତା ରାଉତରାୟଙ୍କ ଶିଳ୍ପରେ ରୂପାୟିତ ହେବା ସଙ୍ଗେ ସଙ୍ଗେ ତାଙ୍କ ସୃଷ୍ଟି ଅନ୍ତରାଳରେ ରହିଛି ଏକ ପ୍ରଚ୍ଛନ୍ନ ଶିଳ୍ପୀ, ଯେ କି ମଣିଷର ଦୁଃଖ ବିପାକପ୍ରତି ସମ୍ବେଦନଶୀଳ ହେବା ସଙ୍ଗେ ସଙ୍ଗେ ତାକୁ ମୁକ୍ତ ଓ ସ୍ୱାଧୀନ କରିବା ପାଇଁ ସମ୍ପୂର୍ଣ୍ଣ ସଂଗ୍ରାମରତ ।'' ବାସ୍ତବିକ ଅବହେଳିତ ନିଷ୍ପେସିତ ମଣିଷ ପ୍ରାଣର ହାହୁତାଶ ଓ ଆଖିର ଅଶ୍ରୁରେ ବ୍ୟଥାହତ ହୋଇଉଠିଛି କବିପ୍ରାଣ । ବିଶେଷତଃ, ଯୁଦ୍ଧ ପରବର୍ତ୍ତୀ ମଣିଷର ଜୀବନଯାତ୍ରା ବ୍ୟାହତ ହୋଇଛି । ଜୀବନର ସବୁ ସ୍ୱପ୍ନ ଓ ସମ୍ଭାବନାକୁ ସତେ ଯେମିତି ଯୁଦ୍ଧର କ୍ରୂର ହସ୍ତ ପୋଛିନେଇଛି । ପ୍ରତିମା ନାୟକ ବିପର୍ଯ୍ୟସ୍ତ ସମୟର ଶରବ୍ୟ ହୋଇଛି । କ୍ଷୀଣ, ଦୁର୍ବଳ ଦେହ, ମଳିନ ରୂପ, ମୁହଁରେ ଖାକି ହସ ନେଇ ସେ ଆତଯାତ ହୋଇଛି । ଅସରନ୍ତି ଦୁଃଖ ଓ ନିର୍ଯାତନାର କେନ୍ଦ୍ରବିନ୍ଦୁ ପ୍ରତିମା ନାୟକ ଆଉ ବ୍ୟକ୍ତିବିଶେଷ ହୋଇ ରହିନାହିଁ । ଗୋଟିଏ ବିପନ୍ନ ସମାଜର ସେ ପ୍ରତିନିଧିତ୍ୱ କରିଛି।

କାବ୍ୟପୁରୁଷ ଅନ୍ତରଙ୍ଗଭାବେ ଭଲ ପାଇଛି ସୃଷ୍ଟିକୁ । ସେଥିପାଇଁ ଭ୍ରଷ୍ଟାଚାର, ଭଣ୍ଡତା ଓ ଦୁର୍ନୀତିଗ୍ରସ୍ତ ସମାଜକୁ ସନ୍ଦର୍ଶନ କରି ସେ ବ୍ୟଥିତ ହୋଇଛି । ଯେଉଁ ସମାଜରେ ପୁଞ୍ଜିପତି ତା'ର ପୁଞ୍ଜି ବଢାଇଚାଲେ, ଗରିବର ରକ୍ତ ଶୋଷଣ କରି ତୃପ୍ତିରେ ନିଦ୍ରାଯାଇପାରେ, ସେହି ଘୁଣଖିଆ ସମାଜ ସୃଷ୍ଟିରେ ସୌନ୍ଦର୍ଯ୍ୟକୁ ପ୍ରକଟିତ କରିବାକୁ ଅକ୍ଷମ । ମଣିଷ ଅକାଳରେ ଯେଉଁଠି ପୋକମାଛି ପରି ମୃତ୍ୟୁବରଣ କରେ, ତା'ର ଚିତାଭସ୍ମରେ ପୃଥିବୀ ଯେତେବେଳେ ବିବର୍ଣ୍ଣ, ସେତେବେଳେ ସେ ମାଟିରେ ସତେଜ ସୁନ୍ଦର ପୁଷ୍ପ ଫୁଟିପାରେ ନାହିଁ । ଶୀତଋତୁ ମଧ୍ୟ ନିଘୋଡ ନିଦରେ ଶୋଇଯାଏ । ଏପରି ସୃଷ୍ଟିତ କବିଙ୍କର କାମ୍ୟ ନୁହେଁ। କାବ୍ୟପୁରୁଷ ବ୍ୟସ୍ତବିବ୍ରତ। ସମସ୍ୟା ଘେରରେ ବନ୍ଦୀ ହୋଇ ସେ ଅଣନିଃଶ୍ୱାସୀ । କ'ଣ ହୋଇପାରେ ତେବେ ଏ ସମସ୍ୟା ସମାଧାନର ପନ୍ଥା ? ଅବଚେତନ ଓ ଅଚେତନସ୍ତରରେ ଘୋର ଆଲୋଡନ । ଖୋଜି ଖୋଜି କାବ୍ୟପୁରୁଷ ପାଇଛି ସମସ୍ୟା ସାମାଧାନର ସୂତ୍ର । ବ୍ୟଥା, ଅଶ୍ରୁ, ଯନ୍ତ୍ରଣା, ହାହାକାର ଓ ସ୍ୱପ୍ନରେ ଉବୁଟୁବୁ ହୋଇ ଦିଗହଜା ହେଲାବେଳେ ଶତସୂର୍ଯ୍ୟର ରଶ୍ମି ନେଇ ସାମ୍ନାରେ ଉଭାହୋଇଛନ୍ତି ଧ୍ୱଂସ ଓ ସୃଷ୍ଟି । ବାସ୍ତବତାର ମୁହାଁମୁହିଁ ହୋଇ ନିଜ ଅଧିକାର ସାବ୍ୟସ୍ତ କରି ଏକ ସୁନ୍ଦର ପୃଥିବୀ ସୃଷ୍ଟି କରିବାକୁ ସେ ଆଗେଇ ଆସିଛି । ସେଥିପାଇଁ ସେ ପ୍ରଳୟ ଚାହିଁଛି । ତେଣୁ ଗାଇଛି– ''ଧ୍ୱଂସର କଥା କହ/ ସୃଷ୍ଟିର ଛବି ଦେଖି ଦେଖି ବହୁ ହେଲାଣି ଦୁର୍ବିସହ ।''

ଧ୍ୱଂସ ପାଇଁ ଝଡ଼ ଆସିଛି । କାବ୍ୟପୁରୁଷ ସବୁଦ୍ୱାର ଖୋଲି ଝଡକୁ ସ୍ୱାଗତ କରିଛି । ଜୀବନଯାକର ଅର୍ଜନକୁ ସେ ଝଡ ସାମ୍ନାରେ ମେଲେଇ ରଖିଛି । ସବୁ ନଶ୍ୱରତାକୁ ସେ ବିଛେଇ ଦେଇଛି । ମନରେ ପ୍ରାଣରେ ଝଡର ଅଭିଷେକ । ସବୁ ଅନ୍ଧାର ଭିତରେ, ସବୁ ଆଲୁଅ ଭିତରେ ଝଡ ପାଇଁ ଅଭିନନ୍ଦନର ତୋରଣ । ଜୀବନର ଯେତେସବୁ ପାଇବା ନପାଇବା, ଯେତେ ଆକୁଳତା ଓ ପିପାସା ସବୁ ମୂକ ପାଲଟିଛି । ଏତେସବୁ ପରେ ଯାହା ଅକୁହା ରହିଛି, ଯାହା ଶାଶ୍ୱତ ଓ ଚିରନ୍ତନ ତା'ର ପରିଚୟ ଦେବାପାଇଁ ମଧ୍ୟ ସେ ଝଡ ସମର୍ଥ । କବିଙ୍କ ଭାଷାରେ–

''ଏଇ ଯେ ଆସୁଛି ଝଡ଼ କର ସଖୀ ତାରେ ନମସ୍କାର,
ତା' ପାଦେ ପ୍ରଣତି ବାଢେ ଗିରି, ବନ, ନଦୀ ପାରାବାର

X X X X X

ଏଇ ଝଡ ଦେଇଛି ସଖୀ ତୁମକୁ ଯେ ମୋର ପରିଚୟ,
ଭାଙ୍ଗିବାର ମନ୍ତ୍ରସାଥେ ଗଢିବାର ଭୂମିକା ଅକ୍ଷୟ ।
ମୋହରି ସ୍ୱାକ୍ଷର ତହିଁ ଆଜି ବନ୍ଧୁ ! ବାରେ ଚିହ୍ନି ନିଅ,
ଧ୍ୱଂସର ଅଙ୍ଗୁରୀଟିରେ ଅଙ୍ଗୁଳିରେ ଘେନ ଥରେ ପ୍ରିୟ । (ଝଡ)

କବି ସୃଷ୍ଟି ନୁହେଁ, ଧ୍ୱଂସ ଚାହିଁଛି । ଧ୍ୱଂସର ଅଙ୍ଗୁରୀୟ ପିନ୍ଧି ରାତି ପରେ ଏକ ନୂଆ ସକାଳର ସେ ପ୍ରତୀକ୍ଷା କରିଛି । କିନ୍ତୁ ପ୍ରକୃତରେ କ'ଣ ଝଡର ଶେଷ ଅଛି ? ଜୀବନର ଯେତେସବୁ ଆକୁଳତା ଓ ପିପାସା, ଯେତେସବୁ ଆଶା ଓ ନୀରବକ୍ରନ୍ଦନ ଯାହା ଯୁଗଯୁଗ ଧରି ରୁଦ୍ଧ ହୋଇଥିଲା ତାହା ଯେତେବେଳେ ଝଡର କଣ୍ଠରେ ଗୁଞ୍ଜରଣ ସୃଷ୍ଟି କରିଛି ସେତେବେଳେ ତ ସେ ଝଡର ଶେଷ ହୋଇପାରେ ନାହିଁ । କାବ୍ୟପୁରୁଷର ମନେହୋଇଛି ସତେ ଅବା ନୂଆ ସକାଳରେ ନୂଆସୂର୍ଯ୍ୟର ଉଦୟ ସୁଦୂରପରାହତ । ଏହା ଭିତରେ ମଣିଷ ପାଲଟିଯାଇଛି ପଶୁ ବା ରାକ୍ଷସ । ତା'ର ସମସ୍ତ ସୂକ୍ଷ୍ମଚେତନାର ବିଲୁପ୍ତି ଘଟିଛି । ଅହମିକା, ମିଥ୍ୟାଚାରର ପାଶବିକତାକୁ ନେଇ ମଣିଷ ଆଜି ଗର୍ବ କରୁଛି, ଛାତିଫୁଲାଇ ଚାଲିଛି । ଗୌରବ ବଦଳରେ ଆତ୍ମପ୍ରବଞ୍ଚନାକୁ ନେଇ ସେ ବଡେଇ କରୁଛି । ନିଜକୁ ସର୍ବଶକ୍ତିମାନ ଭାବୁଛି । ଏପରିକି ପ୍ରେମିକ ପାଇଁ ପ୍ରେମ ଆଜି ବଡ ନୁହେଁ, ତା ଜୀବନର ଅସଂଖ୍ୟ ତୁଚ୍ଛ ଘଟଣାଭିତରୁ ପ୍ରେମ ଆଜି ଗୋଟିଏ ସାଧାରଣ ଘଟଣା ମାତ୍ର । ପ୍ରେମିକା ତାର ହାତଗଢା କଣ୍ଢେଇ । ତେଣୁ ସେ ଗର୍ବୋଦ୍ଧତ ହୋଇ ପ୍ରକାଶ କରୁଛି–

''ତୁମେ ତ ନଥିଲ ଖାଲି ବାସ୍ତବିକ ଚିର ପରିଚିତା
ତୁମେ ଥିଲ ମୋର ଦୃଷ୍ଟି, ତୁମେ ଥିଲ ମୋର ଯେ କବିତା
ତୁମେ ଯା ନଥିଲ ବନ୍ଧୁ, ମୋ ପାଖରେ ଥିଲ ତୁମେ ତାହା
ତୁମଠାରୁ ବଡକରି ତୁମକୁ ମୁଁ ଗଢିଥିଲି ଆହା !
ତୁମେ ଥିଲ ଅମାନିଶା ଅପ୍ରକାଶ, ନିଷ୍ଠୁର କାଳିମା
ନିଜର ଆଲୋକ ଦେଇ ତୁମକୁ ମୁଁ କଲି ଯେ ପୂର୍ଣ୍ଣିମା ।''

ପ୍ରେମିକ ନକ୍ଷତ୍ର ପରି ନିଜର ଆଲୋକରେ ପ୍ରେମିକାକୁ ଆଲୋକିତ କରିବାର ଦମ୍ଭୋକ୍ତି ପ୍ରକାଶ କରୁଛି । ତା' ଭିତରେ ମଣିଷପଣିଆ ନଷ୍ଟ ହୋଇଯାଇଛି । ସେ ପଶୁତ୍ୱକୁ, ଦାନବତ୍ୱକୁ ଆଜି ଆବୋରି ନେବାକୁ ପ୍ରସ୍ତୁତ । ଆହତ, ପୀଡିତ ମାନବିକତା ମୁକ୍ତ ହେବା ପାଇଁ ଦୈତ୍ୟହେବାର ଅଧିକାର ମାଗୁଛି । ଏ ଦାନବତ୍ୱ ତା' ପାଇଁ ଏକ ସୁରକ୍ଷିତ କବଚ । ଅତୀତର ସକଳ ଯନ୍ତ୍ରଣାକୁ ଭୁଲି ଭବିଷ୍ୟତର ଜଟିଳ ପଥକୁ ସହଜ ସରଳ କରିବାର ଏକ ପାଥେୟ । କବିର ଏହି ଭାବଧାରା ପାଣ୍ଡୁଲିପିର 'ଲୋହିତ' ପର୍ଯ୍ୟାୟରେ ଅଧିକ ପ୍ରଖର ଓ ଶକ୍ତିଶାଳୀ । ଏହି ପର୍ଯ୍ୟାୟରେ କବିତା ମୁକ୍ତି ଲୋଡିଛି । ମୁକ୍ତଛନ୍ଦ ପ୍ରୟୋଗରେ କବିତା ଝରଣା ପରି ବୋହିଯାଇଛି । ଶୈଳୀ ଓ ବିଷୟବସ୍ତୁ ଦୃଷ୍ଟିରୁ ପ୍ରଚଳିତ କାବ୍ୟରୀତିକୁ ଭାଙ୍ଗି 'ପାଣ୍ଡୁଲିପି' ଏକ ନୂତନ ପରିବର୍ତ୍ତିତ ଯୁଗଚେତନାର ଦିଗ ନିର୍ଦ୍ଧାରଣ କରିଛି । ଉପମା ଓ ଚିତ୍ରକଳ୍ପ ପ୍ରୟୋଗରେ ତଥା ଜୀବନ ପ୍ରତି ଏକ ତୀର୍ଯ୍ୟକ୍ ଦୃଷ୍ଟିଭଙ୍ଗୀ ପରିପ୍ରକାଶରେ କବି ରାଉତରାୟଙ୍କ କାବ୍ୟଦୃଷ୍ଟି କବିତାର ଗତି ପରିବର୍ତ୍ତନ କରିବାରେ ସମର୍ଥ ହୋଇଛି ।

ରୋମାଣ୍ଟିକ୍ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ଉପରେ ପର୍ଯ୍ୟବସିତ'ଭାନୁମତୀର ଦେଶ' ଚେତନାର ଏକ ଅନାବିଷ୍କୃତ ଦ୍ୱୀପ, ଯାହାକୁ ଭଲପାଇ ହୁଏ ଅଥଚ ଆପଣାର କରିହୁଏ ନାହିଁ । ସହର ଓ ପଲ୍ଲୀ ଜୀବନର ସଂଘର୍ଷ ହିଁ ଏହାର ମୁଖ୍ୟ କାବ୍ୟସ୍ୱର । ବିନତା ଆଧୁନିକ ନଗର ସଭ୍ୟତାରେ ପରିବର୍ଦ୍ଧିତ ଏକ ଚେତନା । ଲୁହା, ସିମେଣ୍ଟ ଓ କଂକ୍ରିଟ୍ର ଛାତ ଭିତରେ ଯାହାର ଦୃଷ୍ଟି ସୀମିତ । ତରଙ୍ଗ ନିପଟ ପଲ୍ଲୀର ପ୍ରତିନିଧି । ପ୍ରାକୃତିକ ପରିବେଶ ଭିତରେ ତାର ଜନ୍ମ ଓ ଆତଯାତ । ଆଖିରେ ତା'ର ଅସରନ୍ତି ସ୍ୱପ୍ନ, ପ୍ରାଣରେ ମାଟି ଓ ଆକାଶର ନିବିଡ ଆକର୍ଷଣ । ଦୁହିଁଙ୍କର ପରିବେଶ ଭିନ୍ନ, ଜୀବନଧାରା ଭିନ୍ନ । ବିନତା, ତରଙ୍ଗର ଗାଁରେ ନୂତନ ସୂର୍ଯ୍ୟୋଦୟ ଦେଖିଛି । ପ୍ରାକୃତିକ ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇ ମୁକ୍ତ ବାୟୁରେ ନିଃଶ୍ୱାସ ମାରିଛି । ତାର ମନେହୋଇଛି ଏକ ବୋଧହୁଏ ମୁକ୍ତି । କିନ୍ତୁ ବିନତା ପାଇଁ ପ୍ରକୃତରେ ତାହା କ'ଣ ମୁକ୍ତି ? ନା ତା ହୋଇପାରେନା, ତାହା ସାମୟିକ ଉଶ୍ୱାସ ହୋଇପାରେ, ମାତ୍ର ଚିରନ୍ତନ ମୁକ୍ତି ନୁହେଁ । ଏକ ସନ୍ଧି ସ୍ଥଳରେ ଉପନୀତ ବିନତା । ସହର ଓ ପଲ୍ଲୀ ମୁହାଁ ମୁହିଁ ହୋଇ ଛିଡା ହୁଅନ୍ତି ତା ସାମ୍ନାରେ । ସେ ବୁଝିପାରେନା କିଛି । ରହସ୍ୟ ଘେରରେ ବନ୍ଦୀ ହୋଇଯାଏ ବିନତା । ତା ମନରେ ଅସଂଖ୍ୟ ପ୍ରଶ୍ନ–

''ବନିତା କହିଲା, ''ତରଙ୍ଗ
ଏଇ ବୋଧେ ଅସ୍ତସୂର୍ଯ୍ୟର ଦେଶ
ଏଇଠି ବୋଧେ ସାରାଦିନର କ୍ଳାନ୍ତି ହୋଇଯାଏ ଶେଷ ?''

କବି ଜାଣନ୍ତି ଦୁଇଜଣଙ୍କ ମଧ୍ୟରେ ପ୍ରେମ ପ୍ରଣୟ ଥିଲେ ବି ଜୀବନବ୍ୟାପୀ ଏକ ବୁଝାମଣା ସମ୍ପର୍କ ଅସମ୍ଭବ । ତରଙ୍ଗ ବି ଜାଣେ ବିନତା ଭାନୁମତୀର ଦେଶରେ ସବୁଦିନ ପାଇଁ ରହିପାରିବ ନାହିଁ। ତରଙ୍ଗ ମଧ୍ୟ ତାହା ଚାହେଁନାହିଁ । ତା ପାଇଁ ବିନତା ଗୋଟିଏ ସୁମଧୁର ସ୍ୱପ୍ନ । ତା ବଇଁଶୀର ଗୋଟିଏ ମଧୁର ମୂର୍ଚ୍ଛନା। ତରଙ୍ଗ ସେହି ସ୍ୱପ୍ନକୁ, ସେହି ସ୍ୱରର ସୁଖସ୍ମୃତିକୁ ସମଗ୍ର ଜୀବନ ଧରି ରଖିବାକୁ ଚାହିଁଛି । ସେଥିପାଇଁ ବିନତାକୁ କହିଛି–

''ମେଲାଇ ଡେଣା ପାରିବ ବୁଲି ଆକାଶେ ମୋ ଥରେ
ଶୂନ୍ୟତାକୁ ପାରିବ ତାର ଭରି ?
ଉଡିଯିବାର, ଭାସିଯିବାର, ଚାଲିଯିବାର
ମଧୁର କଳରୋଳେ ?''

ପ୍ରେମ ଯଦି ସତ୍ୟ, ପ୍ରେମ ଯଦି ବାସ୍ତବ, ତେବେ ପ୍ରେମର ବନ୍ଧନ ଓ ଅବାସ୍ତବ ନୁହେଁ । ସେହି ବନ୍ଧନରୁ ମୁକ୍ତି କାହିଁ ? ପ୍ରେମ ମଣିଷକୁ ବନ୍ଧନମୁକ୍ତ କରି ଉତ୍ତରଣମୁଖୀ କରେ– ଏ କଥା ବୁଝିଥିଲେ ବିନତା ଓ ତରଙ୍ଗ । ସେଥିପାଇଁ ନିବିଡ ପ୍ରେମ ପ୍ରଣୟ ସତ୍ତ୍ୱେ ମଧ୍ୟ ସେମାନେ ବନ୍ଧନରେ ବାନ୍ଧିହୋଇ ଏକତ୍ର ରହିବାକୁ ଚାହିଁନାହାଁନ୍ତି । ସହର ଜୀବନର ନୂତନ ମୂଲ୍ୟବୋଧର ପ୍ଲାବନରେ ଧୋଇହୋଇ ଯାଉଥିବା ପଲ୍ଲୀର ପୁରାତନ ମୂଲ୍ୟବୋଧକୁ କବି ରୋମାଣ୍ଟିକ୍ ତଥା ବାସ୍ତବବାଦୀ ପୃଷ୍ଠଭୂମି ଉପରେ କଳାତ୍ମକ ଭାବେ ଉପସ୍ଥାପନ କରିଛନ୍ତି । ଚେତନାର ମହାକାବ୍ୟ ଭାନୁମତୀର ଦେଶରେ କବି ବାକ୍‌ଶୈଳୀକୁ ଯେଉଁଭଳି ଭାବେ କାବ୍ୟଶୈଳୀରେ ଉପସ୍ଥାପିତ କରିଛନ୍ତି ତାହା ବାସ୍ତବିକ ଅନନ୍ୟ ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ କବି ଆତ୍ମା ସଂକଟ ଓ ନୈରାଶ୍ୟର ସମ୍ମୁଖୀନ । ସମାଜ ଓ ରାଜନୈତିକ ଜୀବନର ଅଧୋଗତିରେ କାବ୍ୟପୁରୁଷର ସ୍ୱପ୍ନଭଙ୍ଗ ଘଟିଛି । ସେ ମର୍ମେ ମର୍ମେ ଅନୁଭବ କରିଛି– ଆଉ କାହାରିକୁ କିଛି କହିବାର ନାହିଁ । ସେଥିପାଇଁ ତା'ର ବିଦ୍ରୋହର ସ୍ୱର ଧୀରେ ଧୀରେ କ୍ଷୀଣ ହୋଇଯାଇଛି । ସେ ଆତ୍ମମଗ୍ନ ହୋଇଛି । ନିଜ ସହିତ ନିଜେ ଆଳାପ କରିଛି । ଛାୟା ଓ ପ୍ରତିଧ୍ୱନି ମଧ୍ୟରେ କବି ଚିତ୍ତ ଘୂରିବୁଲୁଛି । ଦେହ ଓ ତାର ପ୍ରତିବିମ୍ବ ଭଳି ଦ୍ୱୈତସତ୍ତାର ଆଳାପ ମଧ୍ୟରେ 'ସ୍ୱଗତ' ଉତ୍‌କୀର୍ଣ୍ଣ । କବିଙ୍କ ଭାଷାରେ–

''ସେ ଘରର ବିରାଟ ଦର୍ପଣେ ଦେଖିଲି ମୁଁ ଦୁଇ ପ୍ରତିବିମ୍ବ
ଶେଷ ଓ ଆରମ୍ଭ, ଆରମ୍ଭ ଓ ଶେଷ
ଚିରନ୍ତନ ପାଖେ ପାଖେ ଢଳଢଳ ଗୋଟାଏ ନିମେଷ ।''

ଜୀବନକୁ ନିବିଡଭାବେ ଭଲପାଇ ପୁନଶ୍ଚ ଦୂରେଇଯିବା ଭାବର ରାଗରଞ୍ଜିତରୂପ ହିଁ ଏଥିରେ ପ୍ରକଟିତ । ସାମ୍ୟବାଦୀ ଚିନ୍ତାଧାରାର ବିପ୍ଳବାତ୍ମକ ସ୍ୱର ଏଠି ଆଉ ବିଶେଷଭାବେ ଶୁଭେ ନାହିଁ । ଦୁଇଦୁଇଟି ମହାଯୁଦ୍ଧର ଆତଙ୍କ, ନୈରାଶ୍ୟ, ବ୍ୟର୍ଥତା ବୋଧହୁଏ ସେହି ବିପ୍ଳବୀ କାବ୍ୟପୁରୁଷକୁ ଶକ୍ତିଶୂନ୍ୟ କରିପକାଇଛି । ମାନସିକ ସଙ୍କଟ ଭିତରେ ହୁଏତ କାବ୍ୟସ୍ୱର କ୍ଷୀଣ ଓ ଖଣ୍ଡିତ ଶୁଭିଛି ।

ଧୂଳିମାଟିର ମୋହ ତୁଟାଇ ଦୁନିଆଁର ଡହଡହ ବାସ୍ତବତାକୁ ସାମ୍ନା କରିବାର ସାମର୍ଥ୍ୟ ହରାଇ କାବ୍ୟପୁରୁଷ ପୁଣି ସ୍ୱପ୍ନ ଦେଖିବା ଆରମ୍ଭ କରିଛି 'କବିତା ୧୯୬୨'ରେ । ପ୍ରେମ ଓ ପ୍ରଣୟଜନିତ ରୋମାଣ୍ଟିକ୍ ଚେତନା ସହିତ ବାସ୍ତବବାଦୀ ଚେତନାର ସମନ୍ୱୟରେ କବିତାଗୁଡିକ ଚୈତନ୍ୟୋଦୀପ୍ତ ଓ ଭାରାକ୍ରାନ୍ତ । ବିଭିନ୍ନ ବାଦ, ଛନ୍ଦ ପ୍ରୟୋଗ, ନୂତନ ଉପମା, ଚିତ୍ରକଳ୍ପ ଆଦିର ପରୀକ୍ଷା ନିରୀକ୍ଷା ଭିତରେ ଅନେକ କବିତା ଜଟିଳ ଓ ଦୁର୍ଭେଦ୍ୟ ହୋଇଥିବା ହେତୁ ପାଠକ ସେଗୁଡିକ ସହିତ ସହଜରେ ଯୋଗସୂତ୍ର ସ୍ଥାପନ କରିପାରେନାହିଁ । ଏହି ପର୍ଯ୍ୟାୟରେ କବି କବିତାର ଆତ୍ମାର ସୌନ୍ଦର୍ଯ୍ୟ ଅପେକ୍ଷା ଅଙ୍ଗସଜ୍ଜା ପ୍ରତି ଅଧିକ ସଚେତନ ହୋଇଥିବା ଲକ୍ଷ୍ୟ କରାଯାଏ । ବିଷୟବସ୍ତୁରେ ବୌଦ୍ଧିକତାର ପ୍ରୟୋଗ, କବିତାରେ ମଣିଷ ଜୀବନର ଅର୍ଥ ବା ବୈଶିଷ୍ଟ୍ୟର ଅନୁସନ୍ଧାନ, ସସୀମ ଭିତରେ ଅସୀମ ଓ କ୍ଷଣିକ ଭିତରେ ଶାଶ୍ୱତର ଛବି ଅଙ୍କନ କରିବାକୁ କବି ତତ୍ପର । ସୁତରାଂ ଶବ୍ଦର ଗାମ୍ଭୀର୍ଯ୍ୟ ମଧ୍ୟରେ କବିତାର କୋମଳ ସ୍ୱର ବା ଭାବଟି ଅସହାୟଭାବେ ପୋତିହୋଇ ପଡେ । କବିତାର କଳକଳ, ଛଳଛଳ ଭାବଟି କ୍ରମେ ଲୁପ୍ତ ହୋଇଯାଏ । ଅପ୍ରଚଳିତ ଶବ୍ଦ ଓ ରୂପକମାଳାରେ କବିତା ଓଜନିଆ ହୋଇଉଠେ । ସେ ଆଉ ସଫେଦ ଉତ୍ତରୀ ବା ସ୍ୱଧୀନ ନିଶାଣ ପରି ପବନରେ ଏଣେତେଣେ ଉଡିପାରେ ନାହିଁ । କବିତା ଶୈଳୀ ସର୍ବସ୍ୱ ହୋଇଯାଏ । ସମ୍ପୂର୍ଣ୍ଣ ଗଦ୍ୟରୀତିରେ ପ୍ରବର୍ତ୍ତନ ଅତ୍ୟଧିକ ମିଥ୍‌ର ପ୍ରୟୋଗ ମଧ୍ୟ ପାଠକକୁ ହତାଶ କରେ । ସମୁଦ୍ରର ଗଭୀରତମ ପ୍ରଦେଶରେ ବୁଡି ମୁକ୍ତା ଆହରଣ କରିବା ଯେମିତି ସବୁ ବୁଡାଳି ପକ୍ଷେ ସମ୍ଭବ ନୁହେଁ, ଠିକ୍ ସେହିପରି କବିତାର ଗହୀରକୁ ଯାଇଁ କାବ୍ୟରସ ଆହରଣ କରିବା ପ୍ରତ୍ୟେକ ପାଠକ ପକ୍ଷେ ଅତ୍ୟନ୍ତ କଷ୍ଟସାଧ୍ୟ ହୋଇଉଠିଛି । ସେଥିପାଇଁ ପାଠକ ନିମିତ୍ତ ଅଧିକାଂଶ କବିତା ଅନାକର୍ଷଣୀୟ ହୋଇପଡିଛି ।

ଆଧୁନିକ ଯୁଗର ନାନା ବିପର୍ଯ୍ୟୟ ଓ ଅବକ୍ଷୟଜନିତ ସଙ୍କଟବୋଧରେ କବିସତ୍ତା ମ୍ରିୟମାଣ ତଥା ଭାରାକ୍ରାନ୍ତ ହୋଇପଡିବା ହେତୁ କାବ୍ୟପୁରୁଷ ଆତ୍ମମଗ୍ନ ହୋଇଛି । ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀର ଅଭାବ ହେତୁ କାବ୍ୟସ୍ୱର ଶିଥିଳ ଓ ଅସ୍ପଷ୍ଟ ଶୁଭିଛି । ଅବଶ୍ୟ ବସନ୍ତର ନିଚ୍ଛକ ଜିଲ୍ଲାରେ 'ମତ୍ସ୍ୟଗନ୍ଧା', 'ଏକ ଫାଲ୍‌ଗୁନ୍' ଆଦି କବିତାରେ ରୋମାଣ୍ଟିକ୍ ଭାବତରଙ୍ଗ ଉଚ୍ଛୁଳି ଉଠିବା ଲକ୍ଷ୍ୟ କରାଯାଏ, ଯେପରି–

''ବସନ୍ତ ଆସେ ଯେ ଠେଲି
ଧକ୍କା ଖାଇ କୁକୁଡାର ଦେହେ
ଭାଙ୍ଗି ବହୁ ମହୁର ସୋରେଇ
ମାଟିରେ ଗଡାଇ ଅବା ଫୁଲବଣ ସଞ୍ଜେ ।''
(ବସନ୍ତର ନିଛକ ଜିଲ୍ଲାରେ)

ଅଥବା

'' କେବେ ଧରି ଜାଲେ ମାଛ ହସିହସି ଫେରେ ସେ ନଈରୁ
ମାଛର ଆଖିରେ ତାର ଆଖିଏ ବିଜୁଳି, ବର୍ଷାଝରେ କେଶକଳାପରୁ
ସ୍ତନାଗ୍ରରେ ଜଳବିନ୍ଦୁ ଟୋପ୍‌ପଡେ ଚକ୍‌ଚକ୍ ଗାଲେ
ହସିଲା ଓଠରେ ତାର ଜହ୍ନଉଠା ରଙ୍ଗ
ଫୁଲ ଫୁଟାବେଳେ ତା ଦେହରେ

ହସି ହସି କହେ ଖାଲି ଗୋଟିଏ ସେ କଥା
ମାଛ ନବ ମାଛ ?
ମାଛର ଆଖିରେ ତା'ର ଖାଲି ପଚାରିବା
ହରରଙ୍ଗୀ ପ୍ରଶ୍ନର ପାହାଚ ।'' (ମତ୍ସ୍ୟଗନ୍ଧା)

ଉପରୋକ୍ତ ପଂକ୍ତି ସମୂହରୁ କବିଙ୍କର ଶକ୍ତିଶାଳୀ ଆବେଗପ୍ରବଣତା ଓ ରୋମାଣ୍ଟିକ୍ ଚେତନାର ପରିଚୟ ମିଳେ ।

୧୯୬୨ ପରେ କବି ରାଉତରାୟଙ୍କ କାବ୍ୟସମୂହ କୌଣସି ଏକ ନିର୍ଦ୍ଦିଷ୍ଟ ମନନଶୀଳତା, ଭାବଭାବନା ବା ଦୃଷ୍ଟିଭଙ୍ଗୀ ଉପରେ ପର୍ଯ୍ୟବସିତ ହୋଇଥିବା ଲକ୍ଷ୍ୟକରି ହୁଏନାହିଁ । 'ବାଜିରାଉତ' ଓ 'ପାଣ୍ଡୁଲିପି' ପରେ କବିତା ୧୯୬୯, କବିତା ୧୯୭୧, କବିତା ୧୯୭୪, କବିତା ୧୯୮୩, କବିତା ୧୯୮୭ ଆଦିରେ ବିପ୍ଳବଧର୍ମୀ ଚିନ୍ତାଧାରା ପୁନଃ ପ୍ରକଟିତ ହୋଇଥିଲେ ମଧ୍ୟ ଏ ସ୍ୱର ପୂର୍ବପରି ଏତେ ତୀବ୍ର ବା ଶକ୍ତିଶାଳୀ ନୁହେଁ । କୂଅ ଭିତରୁ ନିର୍ଗତ ସ୍ୱର ପରି ଏହା ଅସ୍ପଷ୍ଟ ଓ କ୍ଷୀଣ । ଏହା ବ୍ୟତୀତ ରୋମାଣ୍ଟିକ୍ ଚେତନା, ବାସ୍ତବଧର୍ମୀ ଚେତନା, ଆଧିଭୌତିକ ଚେତନା ଏହି ସମୟର କବିତାରେ ଛତ୍ରେ ଛତ୍ରେ ଉପଲବ୍ଧ । ଅବଶ୍ୟ ୧୯୭୧ କବିତା ସଂକଳନସ୍ଥିତ ରୋସ୍‌ନାରା, ମୁଜିବୁର ରହମନ, ୟାହିୟା ଖାଁ ପରି କେତୋଟି କବିତାରେ ସତ୍ୟ, ଧର୍ମ, ନ୍ୟାୟ ଓ ମୁକତିର ମନ୍ତ୍ର ଉଚ୍ଚାରିତ । ମଣିଷ ଆତ୍ମାର ବ୍ୟଥା ଓ ବେଦନାରୁ ସମ୍ଭୂତ ଏହି କେତୋଟି କବିତାରେ ସାମାଜିକ ସାମ୍ୟର ପ୍ରତିଷ୍ଠା ପାଇଁ ଯେଉଁ ଆକୂତି ରହିଛି ତାହା ପାଠକକୁ ବିସ୍ମିତ କରେ । ସମସାମୟିକ ଭାବସ୍ପନ୍ଦନ ବ୍ୟତିରେକେ ଏସବୁ କବିତାରେ କବି ନିଖିଳ ବିଶ୍ୱରେ ଶାଶ୍ୱତ ଆଦର୍ଶର ପ୍ରତିଷ୍ଠା ପାଇଁ ଚେଷ୍ଟିତ । ବିନ୍ଦୁରୁ ବଳୟ ଆଡକୁ ଲମ୍ବିଯାଇଛି କାବ୍ୟପୁରୁଷର ଦୃଷ୍ଟିଭଙ୍ଗୀ ।

ମଣିଷ ଜୀବନ ଅସଂଖ୍ୟ ମୁହୂର୍ତ୍ତର ସମଷ୍ଟି । ମୁହୂର୍ତ୍ତସର୍ବସ୍ୱ ଜୀବନ ଉପରେ ଆଧାରିତ ତାଙ୍କର କାବ୍ୟସ୍ୱର । କାବ୍ୟପୁରୁଷ କେତେବେଳେ ବିପ୍ଳବୀ ତ କେତେବେଳେ ଗୈରିକବସନଧାରୀ ସନ୍ନ୍ୟାସୀ । କେତେବେଳେ ସେ ତ୍ୟାଗୀ ତ କେତେବେଳେ ସେ ଭୋଗୀ । ପୁଣି କେତେବେଳେ ସେ ସୁକୁମାର ପ୍ରେମିକ ପୁରୁଷ ତ କେତେବେଳେ ମାୟାମୋହର ଘେରେ ବନ୍ଦୀ ସଂସାରୀ । ଆହୁରି କେତେବେଳେ ସେ ଭାଗ୍ୟ ଭଗବାନଙ୍କୁ ଅସ୍ୱୀକାର କରୁଛି ତ କେତେବେଳେ ସ୍ୱପ୍ନର ପରିଧି ଡେଇଁ ଜୀବନର ବୃହତ୍ତର ସତ୍ୟକୁ ଉଦ୍‌ଘାଟନ କରିବାକୁ ଊର୍ଦ୍ଧ୍ୱମୁଖୀ ହୋଇଛି । ସୁତରାଂ ବିବିଧ ରାଗରଞ୍ଜିତ ସେ ସ୍ୱର । ଦ୍ୱୈତସତ୍ତାର ଅଧିକାରୀ ହୋଇଥିବା ହେତୁ ତାଙ୍କ କାବ୍ୟମାନସକୁ ସମ୍ପୂର୍ଣ୍ଣ ଉଦ୍‌ଘାଟନ କରିବା ସହଜସାଧ୍ୟ ନୁହେଁ । ତାଙ୍କରି ଭାଷାରେ କହିଲେ–

''କେଉଁଠି ବା ଆଦିବିନ୍ଦୁ, କେନ୍ଦ୍ରକାଇଁ କେଉଁଠି ଆରମ୍ଭ
ଅନନ୍ତ ଜୀବନବୃତ୍ତେ ଜ୍ୱଳମାନ ସୂର୍ଯ୍ୟାସ୍ତର ସ୍ତମ୍ଭ ।''

ବାସ୍ତବିକ କବି ରାଉତରାୟଙ୍କ କାବ୍ୟମାନସର ଆଦି ଅନ୍ତ ନିରୂପଣ କରିବା ଗବେଷଣାସାପେକ୍ଷ । ଆକାଶର ବ୍ୟାପ୍ତି ଓ ସମୁଦ୍ରର ଗଭୀରତା ନେଇ ଏହା ପ୍ରକଟିତ । ଆକାଶକୁ ନିରୀକ୍ଷଣ କରି ସେହି ସମୁଦ୍ରରେ ଲହଡି ଭାଙ୍ଗିବାକୁ କାବ୍ୟାମୋଦୀ ପାଠକ ଏବେ ବି ଉତ୍ସୁକ ।

ପ୍ରାଧ୍ୟାପିକା, ଓଡ଼ିଆ ବିଭାଗ,
ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକ-୧



# ଓଡିଆ କବିତାରେ ନୂତନ ଦର୍ଶନ ଓ ମହାକବି ସଚ୍ଚି ରାଉତରାୟଙ୍କ କାବ୍ୟଦୃଷ୍ଟି

ଡକ୍ଟର ନୃସିଂହ ଷଡଙ୍ଗୀ

ଆଧୁନିକ ଓଡ଼ିଆ କବିତାରେ ନୂତନ ଭାବଧାରା ସୃଷ୍ଟିରେ କବି ସଚ୍ଚି ରାଉତରାୟଙ୍କ କାବ୍ୟ–ସ୍ୱର–ସ୍ୱତନ୍ତ୍ର । ପ୍ରଗତିବାଦୀ ଚିନ୍ତାଧାରା ଓ ପ୍ରୟୋଗାତ୍ମକ ଅନୁଶୀଳନରେ ତାଙ୍କ କାବ୍ୟ–ସାଧନା ଉର୍ଜ୍ଜସ୍ୱଳ । ଏହି ମହାନ୍ ସାଧକ ଓଡ଼ିଶାର ଗର୍ବ ଓ ଗୌରବ । ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ଏହି କାବ୍ୟ–ପାର୍ଥ ନିଜ ତିରୋଧାନ ପରେବି ପ୍ରତିଭା ବିଚାରରେ ଅତୁଳନୀୟ ମନେ ହୁଅନ୍ତି । ଏହି ପ୍ରତିଭାଧର କାବ୍ୟ ଶିଳ୍ପୀଙ୍କର ଜନ୍ମ ଖୋର୍ଦ୍ଧା ନିକଟସ୍ଥ ଗୁରୁଜଙ୍ଗ ଗ୍ରାମରେ ୧୯୧୩ ସାଲ ମଇ ମାସ ୧୩ ତାରିଖରେ । ତାଙ୍କ ପିତା ପ୍ରସନ୍ନ କୁମାର ରାଉତରାୟ ଓ ମାତା ମୁକ୍ତା ଦେବୀ ଜୀବତାବସ୍ଥାରେ ଥିଲେ ମଧ୍ୟ କବି ତାଙ୍କର ଜ୍ୟେଷ୍ଠ ପିତା ସଦାନନ୍ଦ ରାଉତରାୟଙ୍କ ଦ୍ୱାରା ପୋଷ୍ୟପୁତ୍ର ରୂପେ ଗୃହୀତ ହୋଇଯାଇଥିଲେ । ପ୍ରଥମେ ଯାଜପୁରରେ ଓ ତତ୍‌ପରେ ପୁରୀର ହାଇସ୍କୁଲମାନଙ୍କରେ ଅଧ୍ୟୟନ କରି କଲିକତାର ବ୍ରାହ୍ମବୟଜ ସ୍କୁଲରୁ ସେ କୃତିତ୍ୱ ସହକାରେ ପ୍ରଥମଶ୍ରେଣୀରେ ମାଟ୍ରିକ୍ୟୁଲେସନ ପାଶ୍ କରିଥିଲେ । ବନାରସ ହିନ୍ଦୁ ବିଦ୍ୟାଳୟକୁ ଆଇ.ଏ ପଢିବାକୁ ଯାଇ ମଧ୍ୟ ଫେରିଆସି କଲିକତାର ସିଟି କଲେଜରେ ସେ ଯୋଗଦେଲେ । ମାତ୍ର ପରୀକ୍ଷା ପୂର୍ବରୁ ରାଜନୈତିକ ଷଡଯନ୍ତ୍ରରେ ସମ୍ପୃକ୍ତ ହୋଇ ଜେଲ୍ ଭୋଗିଥିଲେ । ତଥାପି ଜାମିନରେ ମୁକ୍ତିପାଇ ସେ ପରୀକ୍ଷା ଦେବାର ସୁଯୋଗ ପାଇଥିଲେ ଓ ଆଇ.ଏରେ କୃତକାର୍ଯ୍ୟ ହୋଇଥିଲେ । ରେଭେନ୍ସା କଲେଜରେ ସେ ବି.ଏ ପଢିଲେ । ୧୯୩୭ରୁ ୧୯୩୯ ମସିହା ପର୍ଯ୍ୟନ୍ତ ଛାତ୍ର ଜୀବନ ରେଭେନ୍‌ସାରେ କଟାଇ ପରିଶେଷରେ ଏମ୍.ଏ ଓ ଆଇନ ପଢିବା ପାଇଁ ଅନୁମତି ମିଳିନଥିବାରୁ ତାଙ୍କର ଛାତ୍ରଜୀବନରେ ଯବନିକା ପତନ ହୋଇଥିଲା । ସେ ବହୁତ ବର୍ଷ ପର୍ଯ୍ୟନ୍ତ କଲିକତାରେ ରହିଯାଇଥିଲେ । ୧୯୪୨ ମସିହାଠାରୁ ସେ ଚାକିରି କ୍ଷେତ୍ରରେ ଯୋଗଦେଲେ । ପ୍ରଥମେ ସେ ମୁଖ୍ୟ ଲେବର ୱେଲଫେଆର ଅଫିସର ରୂପେ କେଶୋରାମ କଟନ ମିଲ୍‌ସରେ, ତତ୍‌ପରେ ୧୯୫୨ରୁ ୧୯୬୨ ମସିହା ପର୍ଯ୍ୟନ୍ତ ସେ ସେହି ଲୁଗାକଳରେ ଏକ୍‌ଜିକ୍ୟୁଟିଭ ଅଫିସର ଭାବେ କାର୍ଯ୍ୟ କରିଥିଲେ । ସେ ପିଲାଦିନୁ ଅନ୍ୟାୟ ଅବିଚାର ବିରୋଧରେ ବିଦ୍ରୋହ କରି ଆସିଛନ୍ତି । ତା' ଫଳରେ ତାଙ୍କୁ ଅନେକ ଥର କାରାବରଣ କରିବାକୁ ପଡିଥିଲା । ୧୯୪୫ ମସିହାରେ କବିଙ୍କ ପରିଣୟ ଆନ୍ଧ୍ରର ବିଖ୍ୟାତ ନ୍ୟୁଜଭିଡ ରାଜବଂଶୀୟ ଗୋଲାପଲ୍ଲୀ ରାଜାଙ୍କର କନିଷ୍ଠା କନ୍ୟା ଶ୍ରୀମତୀ ଭୂଦେବୀଙ୍କ ସହିତ ସମ୍ପାଦିତ ହୋଇଥିଲା । କବି ସଚ୍ଚିଦାନନ୍ଦ ରାଉତରାୟଙ୍କର କବିତାବଳୀ ଜୈବିକ ରସବୀଜରେ ପୂର୍ଣ୍ଣ । ସେ ତାଙ୍କର ଅକ୍ଷୟ ସାହିତ୍ୟ ସୃଷ୍ଟି ପାଇଁ ଆନ୍ତର୍ଜାତିକ ଖ୍ୟାତିଲାଭ କରିଅଛନ୍ତି । ୧୯୨୮ ମସିହାରୁ ସେ ନିରବଚ୍ଛିନ୍ନ ଭାବରେ ସାହିତ୍ୟ ସାଧନା କ୍ଷେତ୍ରରେ ସାଧନାରତ ରହି ବହୁ କବିତା, କାବ୍ୟ, ଗଳ୍ପ, ଉପନ୍ୟାସ, ସମାଲୋଚନା ଇତ୍ୟାଦି ସୃଷ୍ଟି କରି ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧିରେ ସକ୍ଷମ ହୋଇଅଛନ୍ତି । ଅଷ୍ଟ୍ରେଲିଆ, ନ୍ୟୁଜିଲାଣ୍ଡ, ଶ୍ୟାମ(ଆଇଲାଣ୍ଡ), ସିଂହଳ, ଇଣ୍ଡୋନେସିଆ, ଜାପାନ ପ୍ରଭୃତି ଦେଶମାନଙ୍କରେ ନାନା ସାଂସ୍କୃତିକ ତଥା ସମାଜ କଲ୍ୟାଣ କାର୍ଯ୍ୟକ୍ରମରେ ଯୋଗଦେଇ ନିଜେ ସମ୍ମାନିତ ହେବା ସଙ୍ଗେ ସଙ୍ଗେ ଓଡ଼ିଆ ଜାତିକୁ ଓ ଓଡ଼ିଆ ସାହିତ୍ୟକୁ ବିଦେଶୀଙ୍କ ଦୃଷ୍ଟିରେ ସାର୍ଥକ ରୂପାୟନ ଘଟାଇବାରେ ସମର୍ଥ ହୋଇଛନ୍ତି । ୧୯୫୫ ମସିହାରେ ଆମେରିକାର ହାର୍ଭାଡ ବିଶ୍ୱବିଦ୍ୟାଳୟ ଦ୍ୱାରା ସେ ନିମନ୍ତ୍ରିତ ହୋଇ ଆନ୍ତର୍ଜାତିକ କଳା ଓ ବିଜ୍ଞାନ ସେମିନାରରେ ଅଂଶଗ୍ରହଣ କରିବାକୁ ଯାଇଥିଲେ । ସେଠାରୁ ସେ ନ୍ୟୁୟର୍କ, ୱାଶିଂଟନ ତଥା ବୋଷ୍ଟନର ସାଂସ୍କୃତିକ ଅନୁଷ୍ଠାନରେ ଯୋଗଦେବା ସଙ୍ଗେ ସଙ୍ଗେ ଇଂଲଣ୍ଡ, ଫ୍ରାନ୍ସ, ଇଟାଲୀ, ଜର୍ମାନୀ ଓ ସୁଇଜରଲ୍ୟାଣ୍ଡ ଆଦି ଦେଶ ଭ୍ରମଣରେ

ଯିବାର ସୁଯୋଗ ପାଇଥିଲେ । ୧୯୬୨ରେ ପୁଣି କବି ଆମେରିକା ଭ୍ରମଣରେ ଗଲେ । ଓଡ଼ିଆ କବି ଭାବରେ ସଚ୍ଚିଦାନନ୍ଦ ରାଉତରାୟ ଭାରତର ସାହିତ୍ୟିକଗୋଷ୍ଠୀ ମଧ୍ୟରେ ଏକ ମୁଖ୍ୟ ଆସନ ଦାବି କରି ଆସିଛନ୍ତି । ସଚ୍ଚି ରାଉତରାୟଙ୍କ ସାହିତ୍ୟିକ ଅବଦାନରେ ଆଧୁନିକ ଓଡ଼ିଆ ସାହିତ୍ୟ ଏକ ନିର୍ଦ୍ଦିଷ୍ଟ ରୂପରେଖ ଲାଭ କରିଛି । ସୌନ୍ଦର୍ଯ୍ୟଚେତନା ଓ ପ୍ରାଣ ପ୍ରାଚୁର୍ଯ୍ୟରେ କବି ରାଉତରାୟଙ୍କର ସାହିତ୍ୟ ପ୍ରାଣବନ୍ତ ଏବଂ ରସୋତ୍ତୀର୍ଣ୍ଣ । ତେଣୁ ଯଥାର୍ଥରେ ସେ ବିଂଶ ଶତାବ୍ଦୀର ଶ୍ରେଷ୍ଠ ଓଡ଼ିଆ କବି ବା ମହାକବିର ଆସନ ମଣ୍ଡନ କରିପାରିଛନ୍ତି ।

ରାଉତରାୟଙ୍କ କାବ୍ୟ-ମାନସ: ଉନ୍ମେଷ ଓ ଉତ୍ତରଣ

କବି ସଚ୍ଚିଦାନନ୍ଦ ରାଉତରାୟ ସବୁଜ କବିତାର ଦ୍ୱାର ଦେଇ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରବେଶ କରିଛନ୍ତି । ପ୍ରଗତିବାଦୀ ସାହିତ୍ୟ ଶିବିରରେ ଯୋଗଦେଇ ମାର୍କସ୍‌ବାଦର ଅନ୍ୟତମ ଉଦ୍‌ଗାତା ଭାବରେ ଅଚିରେ ସୁକୀର୍ତ୍ତି ଅର୍ଜିଛନ୍ତି । ୧୯୩୧ ମସିହାରେ ତାଙ୍କର ପ୍ରଥମ କବିତା ଗ୍ରନ୍ଥ 'ପାଥେୟ' ପ୍ରକାଶିତ ହୁଏ । ଦୁର୍ବଳ ଉପରେ ସବଳର ଅତ୍ୟାଚାର ଓ ପୁଞ୍ଜିବାଦ ବିରୋଧରେ ବିଦ୍ରୋହର ସ୍ୱର ଏ ପୁସ୍ତକ ମାଧ୍ୟମରେ ସେ ପ୍ରକାଶ କରିଅଛନ୍ତି । ୧୯୩୨-୩୪ ମସିହାରେ ପଲ୍ଲୀ ଜୀବନର ବିଭିନ୍ନ ଘଟଣାକୁ କେନ୍ଦ୍ର କରି ବିଭିନ୍ନ କବିତା ରଚନା କରିଥିଲେ କବି ସଚ୍ଚିଦାନନ୍ଦ ରାଉତରାୟ । ଏହି କବିତାଗୁଡିକ 'ପଲ୍ଲୀଶ୍ରୀ' କବିତା ସଙ୍କଳନରେ ସନ୍ନିବେଶିତ କରାଯାଇ ପ୍ରକାଶିତ ହେଲା ୧୯୪୨ ମସିହାରେ । ପଲ୍ଲୀ ଜୀବନର ବାର୍ତ୍ତାରେ 'ଚିତ୍ରଗ୍ରୀବ' ଉପନ୍ୟାସ ଓ ସମସ୍ୟା ପ୍ରକାଶିତ ହୁଏ ୧୯୩୫ ସାଲରେ । ୧୯୩୯ ମସିହାରେ କବି ଜୀବନର ସ୍ୱକୀୟ ପ୍ରତିଭାରେ ଉଜ୍ଜ୍ୱଳ ସାକ୍ଷର ବହନ କରି ଆତ୍ମପ୍ରକାଶ କରେ 'ଅଭିଯାନ' । ସର୍ବହରା ନିରନ୍ନ କାଙ୍ଗାଳ ଜନତା ପାଇଁ ତାଙ୍କର ଏହି ସୃଷ୍ଟି ଯୋଗାଇଥିଲା ବଞ୍ଚି ରହିବାର ପ୍ରେରଣା । ସେ ୧୯୩୮ରେ ରଚନା କଲେ 'ବାଜିରାଉତ' କବିତା ପୁସ୍ତକ, ଯାହାର ପୃଷ୍ଠଭୂମିରେ ଥିଲା ଢେଙ୍କାନାଳର ପ୍ରଜା ଆନ୍ଦୋଳନ ଏବଂ ସେହି ଆନ୍ଦୋଳନର ନାୟକ ବାଜି ରାଉତର ମୃତ୍ୟୁ । ଏହି କବିତା ପୁସ୍ତକଟି 'The Boatman boy and other poems' ନାମରେ ପରବର୍ତ୍ତୀ କାଳରେ ଭାରତ ଏବଂ ଭାରତ ବାହାରେ ବିଶେଷ ପ୍ରସାର ଲାଭ କରିଥିଲା । ଶ୍ରୀ ହରିନ୍ଦ୍ରନାଥ ଚଟ୍ଟୋପାଧ୍ୟାୟଙ୍କ ଦ୍ୱାରା ତାହା ଅନୁବାଦିତ ହୋଇଥିଲା । ୧୯୪୦-୪୨ ମସିହା ଭିତରେ କବି ସଚ୍ଚିଦାନନ୍ଦ ରାଉତରାୟ ସୃଷ୍ଟି କଲେ କେତେକ ଯୁଗାନ୍ତକାରୀ ଗଳ୍ପ । ସେଗୁଡିକ ହେଲା 'ମଶାଣିର ଫୁଲ', 'ମାଟିର ତାଜ', 'ଅନ୍ଧାରୁଆ', 'ଆଙ୍ଗୁଠି', 'ରାଜାପୁଅ', 'ମଲାକଇଁ' ଇତ୍ୟାଦି । ୧୯୪୨ରୁ ୧୯୪୭ ପର୍ଯ୍ୟନ୍ତ ଯେତେବେଳେ ଭାରତଛାଡ ଆନ୍ଦୋଳନ ଦେଶବ୍ୟାପୀ ବଳବତ୍ତର ରହିଛି, ଠିକ୍ ସେତିକିବେଳେ ଆଧୁନିକ କବିତା ସଂଗୋପନରେ ବିଦେଶରେ ସଂପ୍ରୀତି ପ୍ରକଟନ କରିଛି । ଏଲିୟଟୀୟ ଭଙ୍ଗୀରେ ଆତ୍ମପ୍ରକାଶ କରିବ ବୋଲି ତାହା ଉନ୍ମୁଖ ହୋଇଉଠିଛି । ଏହି ସମୟରେ ରଚିତ 'ପାଣ୍ଡୁଲିପି କବିତା ସଂକଳନ ଓଡ଼ିଆ କାବ୍ୟ ଜଗତରେ ଏକ ନୂତନ ଯୁଗ ସୃଷ୍ଟି କରି ପରବର୍ତ୍ତୀ ପିଢିର ସ୍ରଷ୍ଟାମାନଙ୍କ ପାଇଁ ପଥ ନିର୍ଦ୍ଦେଶ କରିବାରେ ସଫଳ ହୋଇଛି ।

୧୯୪୨ ମସିହାରୁ ୧୯୫୧ ମସିହା ପର୍ଯ୍ୟନ୍ତ କବି ସଚ୍ଚିଦାନନ୍ଦ ରାଉତରାୟ ପର୍ଯ୍ୟାୟକ୍ରମେ ଓଡ଼ିଆ କବିତା ସମୂହରେ ନୂତନତାର ଆବାହନ କରିଛନ୍ତି । ସେ ସାହିତ୍ୟର ବିଭିନ୍ନ ଦିଗକୁ ପରୀକ୍ଷା ନିରୀକ୍ଷା ସହ ସାର୍ଥକ ଭାବରେ ଓହ୍ଲେଇ ଯାଇଅଛନ୍ତି । 'ବାକ୍‌ରୀତି ସଙ୍ଗେ ସଙ୍ଗେ କାବ୍ୟିକ ରୀତିର ସମନ୍ୱୟ' ଏହି ସମୟରେ ତାଙ୍କ କବିତାମାନଙ୍କରୁ ଦେଖିବାକୁ ମିଳିଥାଏ । ମୁକ୍ତ ଛନ୍ଦ ଓ ଗଦ୍ୟ ଛନ୍ଦର ପ୍ରୟୋଗ ତଥା ବର୍ଣ୍ଣନା ପରିବର୍ତ୍ତେ ବ୍ୟଞ୍ଜନା, ଭାବପ୍ରବଣତା ପରିବେର୍ତ୍ତ ବୌଦ୍ଧିକତା କବି ରାଉତରାୟଙ୍କର କବିତାରେ ଦେଖିବାକୁ ମିଳେ । ''ଭାଷାର ସାମାଜିକରଣ, ଲିଖିତ ଭାଷାକୁ କଥିତ ଭାଷାର ନିକଟବର୍ତ୍ତୀ କରିବାର ପ୍ରୟାସ, ନୂଆ ନୂଆ ଉପମା, ଚିତ୍ରକଳ୍ପର ପ୍ରୟୋଗ, ଦୈନନ୍ଦିନ ଜୀବନର ଅବସରରେ କବିତାକୁ ପ୍ରତିଷ୍ଠିତ କରିବାର ଉଦ୍ୟମ କବି ରାଉତରାୟଙ୍କର ଆଧୁନିକ କବିତାଗୁଡିକରେ ପ୍ରୟୋଗାତ୍ମକଭାବେ ରୂପନ୍ୟାସ ନେଇଛି ।

ବିଂଶ ଶତାବ୍ଦୀର ୫ମ ଶତକ (୧୯୪୦-୫୦)ଟି ଓଡ଼ିଆ କବିତା ଇତିହାସର ଏକ ସନ୍ଧିକ୍ଷଣ । ଏହିକାଳରେ ଆଧୁନିକ କବିତା ଜନ୍ମ ଘେନିଛି, ମାତ୍ର ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ଅସପତ୍ନ ପ୍ରତିଷ୍ଠା ପାଇପାରିନାହିଁ । 'ଶଙ୍ଖ'ରେ 'ପ୍ରତିମା ନାୟକ' ଓ 'ଡଗର'ରେ 'ଶ୍ରୀ ଚିନ୍ତାମଣି ମହାନ୍ତି' ଆଦି କବିତାର ପ୍ରକାଶନ ସଙ୍ଗେ ସଙ୍ଗେ ୧୯୪୩ ଖ୍ରୀଷ୍ଟାବ୍ଦରୁ ଆଧୁନିକ ଓଡ଼ିଆ କବିତା ଜନ୍ମ ଘେନିଛି ଓ ପାଣ୍ଡୁଲିପି (୧୯୪୭)ର ନାନ୍ଦୀ ମୁଖରେ ଶୁଣାଯାଇଛି ତାର ପ୍ରଥମ ନାନ୍ଦୀପାଠ । 'ପାଣ୍ଡୁଲିପି' ତିନୋଟି ବିଭିନ୍ନ ସ୍ୱର, ସ୍ୱାଦର ଏକ କାବ୍ୟ ସଙ୍କଳନ । ଆଧୁନିକ କବିତା ସହିତ ସବୁଜ କବିତା ଓ ପ୍ରଗତିବାଦୀ କବିତା ଏକତ୍ର ସମାବିଷ୍ଟ । କବି ଶ୍ରୀ ରାଉତରାୟ ସେଥିରେ ଟି.ଏସ୍. ଏଲୀୟଟଙ୍କୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ

